

ଲୋକ କଲ୍ୟାଣ ଗ୍ରନ୍ଥ ମାଳା

# ଜାପାନର କୃଷି ଓ ଶିଳ୍ପ

ସାମାଜିକ ଶିକ୍ଷା ବିଭାଗ, ଓଡ଼ିଶା ସରକାର

ଲୋକକଲ୍ୟାଣ ଗ୍ରନ୍ଥମାଳା

ପ୍ରଥମଖଣ୍ଡ

# ଜାପାନର କୃଷି ଓ ଶିଳ୍ପ

ଶ୍ରୀ ଚମନ୍‌ଲାଲ୍‌ଙ୍କ

**Cottage industries and Agriculture in JAPAN**

ଅନୁସରଣରେ

ଶ୍ରୀ ବିନୋଦ କାନୁନ୍‌ଗୋ

## ଗ୍ରନ୍ଥ-ସୂଚୀ

ପ୍ରସିଦ୍ଧ ଭାରତୀୟ ସାଂବାଦିକ ଶ୍ରୀ ଚମନ୍‌ଲାଲ୍‌ଙ୍କ ଲିଖିତ ଏଇ ନାମର ଇଂରାଜି ପୁସ୍ତକଟି ପଢ଼ିଲା ପରେ ମୋର ତୀବ୍ର ଇଚ୍ଛା ହେଲା ଯେ, ଏ ବହିଟି ସବୁ ଭାରତୀୟ ଭାଷା ମାନଙ୍କରେ ଅନୂଦିତ ହୋଇ ଭାରତର ଜନସାଧାରଣ ଭିତରେ ବ୍ୟାପକ ଭାବରେ ପ୍ରଚାରିତ ହେବା ଉଚିତ । ସ୍ୱାଧୀନ ଭାରତ ଆଜି ପଞ୍ଚବାର୍ଷିକ ଯୋଜନା ଦେଇ ଏକ ନୂତନ ଦେଶ ଓ ଜାତି ଗଢ଼ିବାର ବିରାଟ ଚେଷ୍ଟାରେ ବ୍ୟସ୍ତ । ସାଧାରଣ ଲୋକେ, ନିଜର ଅଜ୍ଞତା ବଶତଃ, ନେତା ଓ ସରକାରଙ୍କ କଳ୍ପନା ଓ ପ୍ରଗତିକୁ ଅବିଶ୍ୱାସ କରିବା ସ୍ୱାଭାବିକ । ଏତିକିବେଳେ ଆମେ ଯଦି ଲୋକଙ୍କ ପାଖରେ ଏପରି ଦୃଷ୍ଟାନ୍ତ ପହଞ୍ଚାଇ ପାରିବା ଯେଉଁଠି, ନେହେରୁ ଯାହା କଳ୍ପନା କରୁଛନ୍ତି ଓ ଆମ ସରକାର ଯାହା କାର୍ଯ୍ୟରେ ପରିଣତ କରିବାକୁ ଚେଷ୍ଟା କରୁଛନ୍ତି, ତାହା ସବୁ ଦେଶବାସୀ ଓ ତାଙ୍କର ସରକାରଙ୍କ ପରିପୂର୍ଣ୍ଣ ସହଯୋଗ ଫଳରେ, ଆଗରୁ ଘଟିଗଲାଣି, ତେବେ ଲୋକଙ୍କ ମନରେ ଆମେ ଦମ୍ଭ, ପ୍ରତ୍ୟୟ ଓ ଆଶା ଆଣି ପାରିବା ଓ ସେଇ ସୂତ୍ରରେ ଆମେ ଆମ ଲୋକପ୍ରତିନିଧି ସରକାରଙ୍କ କର୍ମଠ ହସ୍ତକୁ ଦୃଢ଼ୀଭୂତ କରି ପାରିବା ।

ଏହି ଉଦ୍ଦେଶ୍ୟରେହିଁ ଓଡ଼ିଶା ସରକାରଙ୍କ ସାମାଜିକ ଶିକ୍ଷା ବିଭାଗ ପକ୍ଷରୁ ଏଇ ବହିଟିର ଅନୁବାଦ ବର୍ତ୍ତମାନ ଓଡ଼ିଶାର ଜନସାଧାରଣ ଆଗରେ ଉପସ୍ଥାପିତ କରାଯାଉଛି । ଆଶା କରେ ଏ ଦେଶରେ ଜାପାନର ଆଦର୍ଶ, ଆମର ଘରେ ଘରେ ପ୍ରବେଶ ଲାଭ କରି ଜାତିର ଦୈନନ୍ଦିନ ଅଭ୍ୟାସ, ଜୀବନର ଆଦର୍ଶ, ନାଗରିକ ଚେତନା ରାଷ୍ଟ୍ର ପ୍ରତି କର୍ତ୍ତବ୍ୟବୋଧ, ଏବଂ ଉତ୍ପାଦନମୁଖୀ ଶ୍ରମ ପ୍ରତି ସହଜାତ ଆଗ୍ରହ ଆମ ଜାତିର ପ୍ରତ୍ୟେକ ବ୍ୟକ୍ତିର ପ୍ରାଣରେ ଏକାଧାରରେ ଉଦ୍‌ବେଳିତ ଓ ପ୍ରତିଷ୍ଠିତ କରିବ ବୋଲି ଆଶା କରେ ।

ଔଁ

ଶ୍ରୀମାନ୍ ବିନୋଦ କାନୁନ୍‌ଗୋ ମୋ ଅନୁରୋଧରେ ଯଥାଶୀଘ୍ର ଏ ପୁସ୍ତକଟିର ମର୍ମାନୁବାଦ କରି ଦେଇ ଥିବାରୁ ତାଙ୍କୁ ଧନ୍ୟବାଦ ଦେଉଛି । ଇତି ।

ମାୟାଧର ମାନସିଂହ

## ସ୍ଥାନ ଅଳ୍ପ—

# ଲୋକ ଅଧିକ

ଜାପାନର କ୍ଷେତ୍ରଫଳ କେତେ, ତା'ର ଲୋକସଂଖ୍ୟା କେତେ— ସେଗୁଡ଼ିକ ଜାଣିବା ବିଶେଷ କିଛି ଦରକାର ନାହିଁ ବୋଲି ହୁଏତ ମନେ ହୋଇପାରେ, କିନ୍ତୁ ପ୍ରକୃତରେ ସେ ଜ୍ଞାନ ଆମର ଦରକାର। କ୍ଷେତ୍ର ବିଶେଷରେ ପଡ଼ି ମନୁଷ୍ୟ ଜାତିର ଅଦ୍ଭୁତ ପରିବର୍ତ୍ତନ ହୋଇ ଯାଇଛି। ତା'ର ଗୃହଚାଳନ, ଖିଆପିଆ, ସଂସ୍କୃତି—ସବୁଉପରେ ପ୍ରଭାବ ପକାଇଛି, ଦେଶର ଧନ ସମ୍ପଦ, ଏରିଆ ଓ ଜଳବାୟୁ।

ବମ୍ବେ ପ୍ରଦେଶର ଲୋକେ ଯେତେବେଳେ ଶୁଣିବେ ଯେ ସମଗ୍ର ଜାପାନର କ୍ଷେତ୍ରଫଳ ତାଙ୍କ ପ୍ରଦେଶଠାରୁ ମଧ୍ୟ ଢେର୍ କମ୍, ସେମାନେ ନିଶ୍ଚୟ ଆଶ୍ଚର୍ଯ୍ୟ ହେବେ। ବମ୍ବେର କ୍ଷେତ୍ରଫଳ ୧୮୮ ହଜାର ବର୍ଗ ମାଇଲ, ଜାପାନର କ୍ଷେତ୍ରଫଳ ୧୪୭ ହଜାର ବର୍ଗ ମାଇଲ। ଓଡ଼ିଶାର କେବଳ ଅଢ଼େଇଗୁଣ ହେଲା ଜାପାନ [ ବମ୍ବେ ୧୮୮୨୪୦, ଓଡ଼ିଶା ୬୦୧୪୦, ଜାପାନ ୧୪୭୬୬୧ ବର୍ଗ ମାଇଲ ]।

କିନ୍ତୁ ଜାପାନର ସୌଭାଗ୍ୟକୁ ହେଉ ବା ଦୁର୍ଭାଗ୍ୟକୁ ହେଉ ସେତିକ ସ୍ଥାନ ଭିତରେ ଆଠ କୋଟି ଲୋକ ଠେନିହୋଇ ରହିଛନ୍ତି।

ଜାପାନଠାରୁ ବମ୍ବେ ୪୦ ହଜାର ବର୍ଗମାଇଲ ବଡ଼ ହେଲେ ମଧ୍ଯ ତା'ର ଲୋକସଂଖ୍ୟା ଗୁରି କୋଟି ୭୮ ଲକ୍ଷ ଅଥଚ ଜାପାନ ସଂଭାଳୁଛି ଆଠ କୋଟି ଲୋକଙ୍କୁ । ଆମ ଭାରତର କ୍ଷେତ୍ରଫଳ ୧୨ ଶହ ୭୦ହଜାର ବର୍ଗ ମାଇଲ—ଆଠଗୁଣ ଜାପାନରୁ ବଡ଼, କିନ୍ତୁ ଆମର ଲୋକସଂଖ୍ୟା ଜାପାନର କେବଳ ସାଢ଼େ ଗୁରିଗୁଣ ।

ଏ ହିସାବରୁ ଅବଶ୍ୟ ବୁଝିହୁଏ ପଡ଼ିଯାଉଛି, ସେ ଦେଶର ଲୋକଙ୍କ ପାଇଁ କେତେ କମ୍ ଜମି ଅଛି । କିନ୍ତୁ ଆହୁରି ଟିକିଏ ତଳେଇ ଦେଖିଲେ ଜାପାନର ଲୋକଙ୍କ ପ୍ରତି ଆମର ଦୟା ହେବ । ଆମ ଭିତରୁ ସମସ୍ତେ ଶୁଣିଛୁ ଜାପାନରେ ପ୍ରବଳ ଭୂମିକମ୍ପ ହୁଏ । ସେଥିଯୋଗୁ ଜାପାନରେ ଯେତେ ଜମି ଅଛି ସେଥିର ଛ' ଭାଗରୁ ପାଞ୍ଚ ଭାଗରେ ଚାଷ ହୋଇପାରେ ନାହିଁ । ଆମ ଭାରତର ମୋଟ ଜମିକୁ ମାପି ଦେଲେ ୮୧ କୋଟି ଏକର ହେବ । ସେଥିର ଶତକଡ଼ା ୨୭ ଭାଗ ଜମିରେ ଫସଲ ହୋଇପାରୁଛି । କିନ୍ତୁ ଜାପାନରେ ଶତକଡ଼ା ୧୬ ଭାଗରୁ ଅଧିକ ଜମିରେ ଫସଲ ହୁଏ ନାହିଁ । ବୁଝିବାକୁ ସୁବିଧା ହେବ ବୋଲି ଆଉ ଗୋଟାଏ ହିସାବ ଦିଆ ଯାଉଛି । ଯେଉଁ ଜମି ଚାଷ ହେଉଛି ତାକୁ ଯଦି ଅଢ଼େଇ ଏକରର ଖଣ୍ଡେ ଖଣ୍ଡେ କିଆରି କରି ଦେବା, ସେ କିଆରି ଉପରେ କେଉଁ ଦେଶର କେତେ ଜଣ ଲୋକ ନିର୍ଭର କରି ରହୁଛନ୍ତି ତା'ର ହିସାବ ଦିଆଗଲା—

ଜାପାନ··· ······୧୨
ଭାରତ··· ······୩
ଜର୍ମାନୀ··· ··· ୩୪
ଆମେରିକା··· ···୧
ରୁଷ୍··· ·········୧ ରୁ କମ୍
ଫ୍ରାନ୍ସ··· ··· ···୨

ଏଥିରୁ ବେଶ୍ ଅନୁମାନ କରହୋଇ ପାରେ ଜାପାନର ଲୋକେ କିପରି ପେଟ ପୂରାଇବାକୁ କେତେ ଜମି ପାଉଛନ୍ତି ।

ଏ କରୁଣକାହାଣୀ ଏଇଠି ଶେଷ ହୋଇ ଯାଉ ନାହିଁ । ଜାପାନର ଲୋକସଂଖ୍ୟା ଅନ୍ୟ ଯେ କୌଣସି ଦେଶ ତୁଳନାରେ ହୁ, ହୁ ହୋଇ ବଢ଼ି ଯାଉଛି । ପ୍ରତି ବର୍ଷ ପ୍ରାୟ ୧୦ ଲକ୍ଷ ଅଧିକା ଲୋକଙ୍କୁ ଖୁଆଇବାକୁ ପଡ଼ୁଛି । ବେଶି ଦିନର କଥା ନୁହେଁ—୬୦ ବର୍ଷ ତଳେ ଜାପାନର ଲୋକସଂଖ୍ୟା ଥିଲା ୪ କୋଟିରୁ କିଛି କମ୍ । ଆଜି ପ୍ରାୟ ୯ କୋଟି ହୋଇ ସାରିଲାଣି ଓ ଆଉ ୧୨ ବର୍ଷ ପରେ ୧୯୭୦ ବେଳକୁ ୧୦ କୋଟି ହୋଇ ସାରି ଥିବେ । ଜନସଂଖ୍ୟା ବୃଦ୍ଧି ବନ୍ଦ କରିବା ଜାପାନରେ ହୁଏ ତ ସମ୍ଭବ ନୁହେଁ । ସେ ଦେଶର ପରିସ୍ଥିତି ଯାହା ହେଲାଣି ସେଥିରେ ଜନସଂଖ୍ୟା କମିବ ବୋଲି ଆଶା କରିବା ଭୁଲ ହେବ । ସେଠାର ସ୍ତ୍ରୀଲୋକମାନଙ୍କର ସନ୍ତାନ ପ୍ରସବ କରିବାର ଶକ୍ତି ଖୁବ୍ ବେଶି; ଟୁଆଟିଏ ଜନ୍ମ ହେଲେ ତା'ର ଯତ୍ନ ଭଲ ଭାବରେ ନିଆ ଯାଉଥିବାରୁ ଶିଶୁ ମୃତ୍ୟୁ ସଂଖ୍ୟା କମ୍; ଲୋକେ ନିଜର ସମସ୍ତ ବୁଦ୍ଧି ଖଟାଇ ସ୍ୱାସ୍ଥ୍ୟକୁ ଠିକ୍ ରଖିବା ପାଇଁ ଉପଯୁକ୍ତ ଖାଦ୍ୟ ଖାଉଛନ୍ତି; ଦେଶରେ ଛୋଟ ବଡ଼ ଶିଳ୍ପର ପ୍ରସାର ହେଉଥିବାରୁ ଲୋକେ ବେକାର ହୋଇ ବସି ଯାଉ ନାହାନ୍ତି । ଆମେରିକା, ଇଂଲଣ୍ଡର ମାପ-କାଠିରେ ମାପିଲେ ସେମାନେ ଭଲରେ ଚଳୁ ନାହାନ୍ତି ବୋଲି ଜଣା ପଡ଼ୁଥିଲେ ମଧ୍ୟ ଜୀବନଧାରଣର ମାନ ବା ଷ୍ଟାଣ୍ଡାର୍ଡ ସେ ଜାତିକୁ ସୁସ୍ଥ ରଖିଛି । ଲୋକସଂଖ୍ୟା ବଢ଼ିବାର ଶେଷ ଅଥଚ ମନୁଷ୍ୟ ଦୃଷ୍ଟିରୁ ବିଚାର କଲେ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କାରଣ ହେଉଛି ଜାପାନୀ-ମାନଙ୍କର ନିଜ ପରିବାରରେ, ନିଜ ଘର ପ୍ରତି ଶ୍ରଦ୍ଧା ଖୁବ୍‌ବେଶି ।

ଜନ୍ମନିରୋଧ ବା ବାର୍ଥକଂଟ୍ରୋଲ୍ ପାଇଁ ଜାପାନରେ ଯେ ଉଦ୍ୟମ ହୋଇ ନାହିଁ ଏ କଥା ନୁହେଁ, କିନ୍ତୁ ତାହା ସଫଳ ହୋଇ ନାହିଁ । ଜାପାନରେ ଥରେ ଶିକ୍ଷିତ ଲୋକଙ୍କୁ କାର୍ଡ ଖଣ୍ଡିଏ ଖଣ୍ଡିଏ ଦେଇ ଜନ୍ମ—ନିରୋଧ ବିଷୟରେ ସେମାନଙ୍କର ମତ କଣ ବୋଲି ପଚରା ଯାଇଥିଲା । ସେମାନଙ୍କ ଭିତରୁ ଅଧିକାଂଶତ ଉତ୍ତର ଦେଲେ ନାହିଁ । ଯେଉଁମାନେ ଦେଲେ ସେମାନଙ୍କ ଭିତରୁ ଶହକେ ୨୬ଜଣ ଏହାର ତୀବ୍ର ବିରୋଧ କଲେ ଓ କହିଲେ ଯେ ବଡ଼ ବଡ଼ ପରିବାର

ହେବା ଭଲ । ଶହକେ ୭୮ ଜଣ କହିଲେ ଦେଶରେ ଜନ୍ମନିରୋଧ ବା ବାର୍ଥକଂଟ୍ରୋଲ ଆନ୍ଦୋଳନ ଚାଲିବା ବିଷୟରେ ସେମାନଙ୍କର ବିଶେଷ ଆଗ୍ରହ ନାହିଁ । କାରଣ ସେମାନେ ନିଜେ ଏହା ଚାହାନ୍ତି ନାହିଁ । ଚମନ୍‌ଲାଲ୍ ନିଜ ମତ ଦେଇ ଲେଖିଛନ୍ତି—"ଭିନ୍ନଭିନ୍ନ ଶ୍ରେଣୀର ଜାପାନୀମାନଙ୍କ ସହିତ କଥାବାର୍ତ୍ତା କରି ମୁଁ ବୁଝିଲି ଯେ କଲେଜରେ ପଢ଼ିଥିବା ଯୁବକମାନଙ୍କ ବ୍ୟତୀତ ଜାପାନରେ ଅନ୍ୟମାନଙ୍କ ମଧ୍ୟରୁ ଅଧିକାଂଶ ଜନ୍ମନିରୋଧ ବା ବାର୍ଥକଂଟ୍ରୋଲ ଚାହାନ୍ତି ନାହିଁ ।"

ଲୋକସଂଖ୍ୟା ବଢ଼ିବାରୁ ଏକ ସମୟରେ ଜାପାନ ତା'ର ସାମ୍ରାଜ୍ୟ ବିସ୍ତାର କରିବାକୁ ଚାହିଁଥିଲା । ପୃଥିବୀରେ ଏତେ ଜମି ଚାରି-ଆଡ଼େ ପଡ଼ିଥିବ, ଅଥଚ ସେମାନେ ଏତିକ କମ୍ ଜାଗାରେ ଖୁନ୍ଦି-ହୋଇ ରହିଲା ଭଳି ରହିଥିବେ । ଏହା ବର୍ଦ୍ଦାସ୍ତ କରିବାକୁ ସେମାନେ ପ୍ରସ୍ତୁତ ନ ଥିଲେ । ଫଳରେ ଜାପାନୀମାନେ ରାଜ୍ୟ ଜୟ କରିବାକୁ ବାହାରିଲେ । ତାର କୁଫଳ ସେମାନେ ଭୋଗ କରୁଛନ୍ତି । ଗତ ଦ୍ୱିତୀୟ ମହାଯୁଦ୍ଧ ପୂର୍ବରୁ ଜାପାନ ସାମ୍ରାଜ୍ୟ ଯେତେ ବଡ଼ ଥିଲା, ଯୁଦ୍ଧ ପରେ ତାହା ଅଧାକୁ କମି ଆସିଲା । ଶତକଡ଼ା ୪୭ ଭାଗ ରାଜ୍ୟ ହରାଇ ଜାପାନ ସାମ୍ରାଜ୍ୟ ବିସ୍ତାର ଧାରଣା ମନରୁ ପୋଛି ଦେଇଛି ।

ତା ହେଲେ ଜାପାନ ତା'ର କୋଟି କୋଟି ମୁହଁରେ ଆହାର ଦେବା ପାଇଁ କି ଉପାୟ କରୁଛି ? ଜାପାନରେ କଣ ନୈରାଶ୍ୟ ଖେଳି ଯାଇଛି ? ମଣିଷ ଭଳି ବଞ୍ଚି ରହିବାର ଆଶା ସେମାନେ କଣ ହରାଇ ବସିଲେଣି ?

କଦାପି ନୁହେଁ । ସେମାନଙ୍କର ଦୃଢ଼ ବିଶ୍ୱାସ ରହିଛି ଯେ ଦୁଇଟା ହାତ ଗୋଟାଏ ପାଟିକୁ ଆହାର ଯୋଗାଇବା ପାଇଁ, ଗୋଟାଏ ଦେହକୁ ଲୁଗାରେ ଘୋଡ଼ାଇବା ପାଇଁ, ଗୋଟାଏ ମୁଣ୍ଡ ଉପରେ ଛାତ ତିଆରି କରି ଦେବା ପାଇଁ ଯଥେଷ୍ଟ । ତେଣୁ ଚିନ୍ତା କରିବାର କିଛି ନାହିଁ । "ବହୁତ ଲୋକଙ୍କୁ ଅଳ୍ପ ଜମି" ବୋଲି ଶୁଣିଦେଲା କ୍ଷଣି ଆମକୁ ଯେପରି ଛନିଆଁ ଲାଗୁଛି, ଜାପାନୀମାନଙ୍କ ସେଭଳି ଛନିଆ

ଲାଗୁ ନାହିଁ । ସେମାନେ ଗୋଟିଏ ମନ୍ତ୍ର ଶିଖିଛନ୍ତି । ତାହା ହେଉଛି ଆମର ଜମି ନାହିଁ ସତ କିନ୍ତୁ ଆମର ପ୍ରତ୍ୟେକ ଘର ଗୋଟିଏ ଗୋଟିଏ କାରଖାନା । ଏହି ଲକ୍ଷ ଲକ୍ଷ "ଘର କାରଖାନା" ଆମକୁ ଆମର ଯାହା ଦରକାର ସବୁ ଯୋଗାଇ ଦେବ । ସେମାନେ ଭଲ କରି ବୁଝିଛନ୍ତି ଯେ ଜାପାନର ବଞ୍ଚିବାର ଏକମାତ୍ର ଉପାୟ ହେଉଛି ଛୋଟ ଛୋଟ ଶିଳ୍ପ, ଘରୋଇ ଶିଳ୍ପର ପ୍ରସାର । ଜାପାନର ଶାସକ, ଅଧ୍ୟାପକ, ପଣ୍ଡିତ, ଅର୍ଥନୀତିଜ୍ଞ—ସମସ୍ତେ ଗୋଟିଏ କଥାରେ ଏକମତ ହୋଇ ସାରିଲେଣି । ତାହା ହେଉଛି— ଯେ ପର୍ଯ୍ୟନ୍ତ ବାହାରେ ପଡ଼ିଥିବା ବଡ଼ବଡ଼ ଭୂଖଣ୍ଡରେ ବସବାସ କରିବା ପାଇଁ ଜାପାନୀ ଲୋକଙ୍କୁ ସୁବିଧା ଦିଆଯାଇ ନାହିଁ ସେ ପର୍ଯ୍ୟନ୍ତ ଜାପାନର ଏକମାତ୍ର ପନ୍ଥା ହେଉଛି ଛୋଟ ଛୋଟ ଗୃହଶିଳ୍ପର ପ୍ରସାର । ସେମାନେ ଆହୁରି ମଧ୍ୟ ଏକମତ ହେଲେଣି ଯେ ଲୋକସଂଖ୍ୟା ଯେପରି ବଢ଼ି ଚାଲିଛି, ସେଥିରେ ନା କୃଷି ନା ବଡ଼ ବଡ଼ କାରଖାନା ଲୋକଙ୍କୁ ପାଳି ପାରିବ । ଛୋଟ ଛୋଟ ଶିଳ୍ପହିଁ ଏକମାତ୍ର ଭରସା । ସେମାନେ ଭଲଭାବରେ ବୁଝିଲେଣି—ଓ ଗଲା ମହାଯୁଦ୍ଧ ସେମାନଙ୍କୁ ବାଧ୍ୟ କଲା ବୁଝିବାକୁ— ଯେ ବଡ଼ ବଡ଼ କାରଖାନା ବସାଇ ବଡ଼ ବଡ଼ ସହର ଗଢ଼ିଦେବାରେ ଲାଭ ତ ନାହିଁ, ନିଶ୍ଚୟ କ୍ଷତି ଅଛି । ଗାଁ ଗହଳରୁ ଲୋକଙ୍କୁ ସହରକୁ ନେଇ ଆସି ବଡ଼ କାରଖାନା ଭିତରେ ଭର୍ତ୍ତି କରିଦେବା ବଦଳରେ ବଡ଼ କାରଖାନାକୁ ଗାଁ ଭିତରେ ନେଇ ଖେଳାଇ ଦେବାହିଁ ବୁଦ୍ଧି-ମାନର କାମ, ବିଜ୍ଞତାର କାମ । ସେମାନେ ଆହୁରି ମଧ୍ୟ ବୁଝିଛନ୍ତି ଯେ ଯେ ପର୍ଯ୍ୟନ୍ତ ଲୋକେ କାମ ପାଇ ନାହାନ୍ତି—ବେକାର ହୋଇ ବସିଛନ୍ତି ସେ ପର୍ଯ୍ୟନ୍ତ ଗଣତନ୍ତ୍ର ଚେର ମାଡ଼ିପାରିବ ନାହିଁ । ଲୋକଙ୍କୁ କାମ ଯୋଗାଇ ଦେଲେ, ବେକାର ସମସ୍ୟା ଦୂର କରି ଦେଲେ ଗଣତନ୍ତ୍ର ଆପେ ଆପେ ଉଧେଇବ ।

ସେଇଥିପାଇଁ ଆଜି ଜାପାନରେ ଯାହାକୁ ପଚାର ସେ କହିବ ଗୃହଶିଳ୍ପହିଁ ଜାପାନର ଜୀବନ ନାଡ଼ିକୋ । ଜାପାନ ପାଖରେ ତ ଯଥେଷ୍ଟ କଞ୍ଚାମାଲ୍ ନାହିଁ । କିନ୍ତୁ ତା'ର ପ୍ରଧାନ କଞ୍ଚାମାଲ୍

ହେଉଛି—ପରିଶ୍ରମୀ ଓ କାମ କରିବାକୁ ମନ ଥିବା ମଜୁରିଆ। ଲୋକେ ସଦା କାମ କରିବାକୁ ପ୍ରସ୍ତୁତ ଥିବେ ପୃଥିବୀର ଯେ କୌଣସି ଅଞ୍ଚଳରୁ କଞ୍ଚାମାଲ୍ ଆସି ସେମାନଙ୍କ ଦୁଆର ମୁହଁରେ ପହଞ୍ଚି ଯିବ। ପ୍ରତ୍ୟେକ ଜାପାନୀ ଆଜି କହୁଛି "ମୋ ଘର ମୋ କାରଖାନା।" ଗୃହକର୍ମ କରିବା ପାଇଁ, ମଜୁରି ଖଟିବା ପାଇଁ ବଡ଼ ବଡ଼ ସହରକୁ ଯିବାର ଇଚ୍ଛା ସେ ସତେ ଯେପରି ନିଜ ମନ ଭିତରୁ ପୋଛି ଦେଉଛି।

ଅଶୀ ବର୍ଷ ତଳେ ଜାପାନର ସମ୍ରାଟ୍ ମେଜି ଭଲ କରି ବୁଝି ପାରି ଥିଲେ ଯେ ଦେଶରେ ଶିଳ୍ପର ପ୍ରସାର ନ ହେଲେ କେବଳ କୃଷି ଲୋକଙ୍କୁ କେବେହେଲେ ପୋଷି ପାରିବ ନାହିଁ। ସେହି ଦିନଠାରୁ ସେ ଦେଶରେ ଶିଳ୍ପର ପ୍ରସାର ପାଇଁ ଉଦ୍ୟମ କରିଥିଲେ, ଓ ଆଜି ଜାପାନରେ ୩୨୦ ଲକ୍ଷ କାର୍ଯ୍ୟକ୍ଷମ ଲୋକଙ୍କ ଭିତରୁ କେବଳ ୧୪୦ ଲକ୍ଷ କୃଷିରେ ଲାଗିଛନ୍ତି—ଅନ୍ୟମାନେ ଛୋଟ ବଡ଼ ଶିଳ୍ପ ଆଡ଼େ ମନ ବଳାଇଛନ୍ତି।



## ବିଚିତ୍ର ଜାପାନୀ ହାତରେ—

# କୁଟୀରଶିଳ୍ପର ବିଚିତ୍ର ରୂପ

ଜାପାନ ଯେତେବେଳେ ଠିକ୍ କରି ଦେଲା ଯେ ତା'ର ଶିଳ୍ପ କଳ କାରଖାନାକୁ ଯେତେଦୂର ସମ୍ଭବ ଗାଁମାନଙ୍କରେ ଖେଳାଇ ଦେବ ସେତେବେଳେ ଜାପାନୀ ଲୋକଙ୍କର ଦୃଷ୍ଟି-କୋଣ ବଦଳିଗଲା । ସେମାନେ ଦେଶଟାକୁ ଏଭଳି କରି ଦେଲେଣି ଯେ ସମଗ୍ର ଜାପାନଟା ସତେ ଯେପରି କଳ କାର-ଖାନାର ଗୋଟାଏ ଘର । ଶ୍ରୀ ଚମନ୍‌ଲାଲ୍ ଅତି ଚମତ୍କାର ଭାଷାରେ ବର୍ଣ୍ଣନା କରିଛନ୍ତି, ଜାପାନରେ କଣ ହୋଇଛି । ସେ ଲେଖିଛନ୍ତି— "ମୁଁ ଜାପାନରେ ତିନିବର୍ଷ କଟାଇଛି ଓ ଗଲା ୧୬ ବର୍ଷ ଭିତରେ ତା'ର ଶିଳ୍ପର କିଭଳି ଅସମ୍ଭବ ଭାବରେ ପ୍ରସାର ହୋଇଛି ତାହା ଖୁବ୍ ନିକଟରେ ରହି ଭଲ ଭାବରେ ଲକ୍ଷ୍ୟ କରି ଦେଖିଛି । ଶିଳ୍ପ କ୍ଷେତ୍ରରେ ଜାପାନର ଉନ୍ନତିର ରହସ୍ୟ ଭେଦକରି ପାରିଲେ ଜଣେ ବୁଝି ପାରିବ ଯେ ସମଗ୍ର ଜାପାନଟା ଗୋଟାଏ ବଡ଼ କାରଖାନାରେ ପରିଣତ ହୋଇ ଯାଇଛି । ସେହି କାରଖାନାରେ ଜାପାନର ପ୍ରତ୍ୟେକ ଲୋକ ନିଜର ଶକ୍ତି ଖଟାଇ କାମ କରୁଛି । ଅଶୀ ବର୍ଷ ତଳେ ଜାପାନଟା ଥିଲା ଗୋଟାଏ କୃଷିପ୍ରଧାନ ଦେଶ । ଦ୍ୱିତୀୟ ମହା-ଯୁଦ୍ଧରେ ଦେଶର ଘୋର କ୍ଷତି ହେଲେ ମଧ୍ୟ ଆଜିସୁଦ୍ଧା ପୃଥିବୀ ଭିତରେ ଜାପାନ ଗୋଟାଏ ବଡ଼ ଶିଳ୍ପ ପ୍ରଧାନ ଦେଶ । ଜାପାନଟା ଆଜି ମଧ୍ୟ କାହିଁକି ଶିଳ୍ପ ପ୍ରଧାନ ଦେଶ ହୋଇ ରହିଛି ତାର ରହସ୍ୟ

ଭେଦ କରିବାକୁ ଗଲେ ଆମେ ପହଞ୍ଚି ଯିବା ଜାପାନୀର ଘରେ । ପ୍ରତ୍ୟେକ ଜାପାନୀର ଘର "ରାତିରେ ଘର ଦିନବେଳେ କାରଖାନା" । ଯୁଦ୍ଧ ପରେ ଜାପାନକୁ ଗଢ଼ି ତୋଳିବା ପାଇଁ ଯଦି କେହି ପ୍ରଶଂସା ପାଇବାର କଥା ସେ ହେଉଛି ଜାପାନୀ "ଘର—କାରଖାନା" ।

## ଭାରତ ଓ ଜାପାନ

ଇଂରେଜମାନେ ଯେତେବେଳେ ଏ ଦେଶରେ ଥିଲେ ସେତେବେଳେ କେତେ ସୁନ୍ଦରେ ହୃଦବୋଧ ହେଲା ଭଳି ଭାଷାରେ ଲେଖି ଆସିଛନ୍ତି—କହି ଆସିଛନ୍ତି ଯେ ଭାରତଟା ପ୍ରଧାନତଃ ଗୋଟାଏ କୃଷିପ୍ରଧାନ ଦେଶ—ତା'କୁ ଶିଳ୍ପ ପ୍ରଧାନ ଦେଶରେ ପରିଣତ କରିବା ଆଦୌ ସହଜ ନୁହେଁ । ଜାପାନର ସମ୍ରାଟ ମେଇଜି ପଚାଶଟା ବର୍ଷରେ ଯାହା କରି ପାରିଲେ ଇଂରେଜମାନେ ଏ ଦେଶରେ ୨୦୦ ବର୍ଷରେ ତାହା କରି ପାରିଲେ ନାହିଁ । କରି ପାରିଲେ ନାହିଁ ବୋଲି ନ କହି ବରଂ ଏ କଥା କହିଲେ ଠିକ୍ ହେବ ଯେ ଜାଣି ଶୁଣି କଲେ ନାହିଁ । ଜାପାନର କୃଷୀ କୃଷିରୁ ଯେତିକି ପାଏ ସେଥିରେ କେବେ ଭଲରେ ଚଳି ପାରନ୍ତା ନାହିଁ । ଯେତେ ଉନ୍ନତ ପ୍ରଣାଳୀରେ କୃଷି କଲେ ମଧ୍ୟ ଜମିରୁ ଫସଲ ଉତ୍ପନ୍ନିବାର ଗୋଟାଏ ସୀମା ଅଛି । ତାହା ବାହାରକୁ ଯାଇ କେହି ଜମିରୁ ଆୟ କରି ପାରିବ ନାହିଁ । ଜାପାନୀ କୃଷୀ ତା'ର ବଳକା ସମୟରେ ଛୋଟିଆ କୁଟିର ଶିଳ୍ପରୁ ଯଥେଷ୍ଟ ଆୟ କରୁଥିବାରୁ ଭଲରେ ଚଳି ପାରୁଛି । କୃଷିମାନଙ୍କୁ ନିଜ ଘର ଭିତରେ କାମ ଯୋଗାଇ ଦେଇ ଅଧିକା ଆୟ କରିବାର ସୁବିଧା କରି ଦିଆ ଯାଇଛି ।

ଜାପାନର କୁଟୀର ଶିଳ୍ପକୁ "ଘର କୋ-ଅପରେଟିଭ" ବୋଲି ଜାପାନ କୁଟୀରଶିଳ୍ପ ବିଶେଷଜ୍ଞ ଶ୍ରୀ ଚମନ୍‌ଲାଲ୍ ବର୍ଣ୍ଣନା କରିଛନ୍ତି । ସେ କାହିଁକି ଏପରି ବର୍ଣ୍ଣନା କରିଛନ୍ତି ତାହା ତାଙ୍କରି ମୁହଁରୁ ଶୁଣାଯାଉ । ସେ ଲେଖିଛନ୍ତି—ଜାପାନକୁ ଯେତେବେଳେ ମୁଁ ଷଷ୍ଠଥର ପାଇଁ ଗଲି ଅନ୍ତତଃ ୨ଶହ "କୁଟୀର କାରଖାନା" ନିଜେ ଯାଇ ଦେଖିଲି । ପ୍ରତ୍ୟେକ

ଘରେ ମୁଁ ଦେଖିଲି ସ୍ୱାମୀ, ସ୍ତ୍ରୀ, ଝିଅ, ପୁଅ ବା ନିକଟ ସମ୍ପର୍କୀୟ କେହି କେହି ଏକାଠି ବସି କାମକରୁଛନ୍ତି ଓ ଖୁସି ଗପ କରୁଛନ୍ତି । କାରଖାନାରେ ଯେତେବେଳେ ଶ୍ରମିକ କାମ କରେ ସେତେବେଳେ କାମରୁ ସେ ଆନନ୍ଦ ପାଏ ନାହିଁ—ସତେ ଯେମିତି ସେ ବାଧ୍ୟ ହୋଇ କାମ କରୁଛି । କାରଖାନାର ସର୍ଦ୍ଦାରର ଆଖି ତା ଉପରୁ ଅନ୍ୟ ଆଡ଼କୁ ବୁଲି ଗଲେ ସେ ହାତ ବନ୍ଦ କରି ଦିଏ ବା ଧୀର କରିଦିଏ । କିନ୍ତୁ ଜାପାନୀ ଘରେ ଯେଉଁମାନେ ସବୁ କାମ କରୁଥାନ୍ତି ସେମାନେ କାମରୁ ଆନନ୍ଦ ପାଉଥାନ୍ତି । ୮।୧୦ ବର୍ଷ ବୟସର ପିଲାଏ ସ୍କୁଲରୁ ଆସି ବାପ, ମା, ଭାଇ, ଭଉଣୀଙ୍କ ମଝିରେ ବସିଯାଇ ଥୋଡ଼ାଏ ୨ କାମ କରିଦିଅନ୍ତି । ଏଥିରୁ କେଭଳି କେହି ଭାବିବେନି ଯେ ଜାପାନୀ ପିଲାମାନେ ଖେଳନ୍ତି ନାହିଁ—କେବଳ କାମହିଁ କରୁଥାନ୍ତି । ଆମେରିକାର ପିଲାଙ୍କଭଳି ଜାପାନୀପିଲା ମଧ୍ୟ ଖେଳିବାକୁ ଭଲପାଆନ୍ତି । ଆମେରିକାରେ ଦେଖିବ ଶନିବାର ଉପରଓଳି ଓ ରବିବାର ଦିନ ସ୍କୁଲପିଲାଙ୍କ ମଉଜ ମଜଲିସ୍ ସମୟ । ଜାପାନ ସ୍କୁଲପିଲା ଶନିବାର ଦିନ ପାଇଁ ଅପେକ୍ଷା କରିବେ କାହିଁକି ପ୍ରତିଦିନର କାମ ଶେଷ ହୋଇଗଲେ ତାଙ୍କର ଛୁଟି ହୋଇଗଲା । ପ୍ରତି ସନ୍ଧ୍ୟାରେ ଦେଖିବ ହଜାର ହଜାର ଜାପାନୀ ଶ୍ରମିକ ପିଲାଙ୍କୁ ସାଙ୍ଗରେ ନେଇ ବଜାର, ଦୋକାନ, ପାର୍କ, ମନ୍ଦିର— ବୁଲିଆସେ ବୁଲୁଛନ୍ତି । ମା, ବଡ଼ଭଉଣୀ ନିଜ ପିଠିରେ ଛୋଟ ଛୋଟ ପିଲାଙ୍କୁ ବାନ୍ଧି ଦେଇ ବୁଲୁଛନ୍ତି । ଖେଳ ବେଳେ ଖେଳ, କାମ ବେଳେ କାମ, କଥାଟାକୁ ଜାପାନୀମାନେ ସତେ ଯେମିତି ଭଲ ଭାବରେ ବୁଝି ଯାଇଛନ୍ତି ।

ଜାପାନରେ ଇଣ୍ଡଷ୍ଟ୍ରିଆଲିଜମ୍ କହିଲେ କ'ଣ ବୁଝାଯାଉଛି ଓ 'ଇଣ୍ଡଷ୍ଟ୍ରି କୋ-ଅପରେଟିଭ୍' ର ପ୍ରକୃତ ଅର୍ଥ କଅଣ ତାହା ଦେଖନ୍ତୁ—

ଟୋକିଓ ସହରର ଗୋଟିଏ ଛୋଟ କାଠଘରେ ଜଣେ ପୁରୁଷ, ଜଣେ ସ୍ତ୍ରୀ ଲୋକ ଓ ଝିଅଟିଏ ବସିଛନ୍ତି । ଘର ତଳେ ପରିଷ୍କାର ସପଟିଏ ପଡ଼ିଛି । ତାଙ୍କ ଘର ନିକଟରେ ଗୋଟିଏ ପେନ୍‌ସିଲ କାରଖାନା

ଅଛି । କାରଖାନାରୁ ପେନ୍‌ସିଲ ଆଣି ସେହି ଘରେ ଦେଇ ଦିଆ ହେଉଛି । ସେମାନଙ୍କର କାମ ହେଲା ଡର୍ଜନେ ଲେଖାଏ ପେନ୍‌ସିଲ ଏକାଠି ବାନ୍ଧିଦେବେ ଓ ବିଡ଼ା ଉପରେ ରଙ୍ଗିନ ଲେବୁଲ୍ ମାରି ଦେବେ ଓ ସଜାଇ ରଖି ଦେବେ । ସେମାନେ ଯେତେବେଳେ ଏହି କାମ କରୁଥାନ୍ତି ଦେଖା ଯାଉଥାଏ ସତେ ଯେପରି ଗୋଟାଏ ଗୋଟାଏ ଅଟୋମେଟିକ୍ (ସ୍ୱୟଂଚାଳିତ) ମେସିନ୍ ପେନ୍‌ସିଲଗୁଡ଼ାକୁ ବିଡ଼ା ବାନ୍ଧୁଛି । ସକାଳୁ ଉଠି ସେମାନେ କାମ ଆରମ୍ଭ କରି ଦିଅନ୍ତି ରାତିପର୍ଯ୍ୟନ୍ତ ଚାଲିଥାଏ । ସ୍କୁଲର ପିଲା ଆସି ଘରେ ବହି ରଖିଦେଇ ପେନ୍‌ସିଲ ବିଡ଼ା ବାନ୍ଧିବାରେ ଲାଗି ପଡ଼ନ୍ତି । ପ୍ରତି ପିଲାର ଦୁଇ ଅଣା ରୋଜଗାର ହୋଇଯାଏ । ଏହିଭଳି ଚାଳିଶିଟି ପରିବାର ପେନ୍‌ସିଲ ବିଡ଼ା ବାନ୍ଧିବାରେ ଲାଗିଛନ୍ତି । ଜାପାନର ଉତ୍ତର ଅଂଶରେ କୌଣସି ସ୍ଥାନରେ ଏହିଭଳି ଅନେକ ପରିବାର ନିଜ ଘରେ ପେନ୍‌ସିଲଗୁଡ଼ା ତିଆରିକରି ବଡ଼ ବଡ଼ ବିଡ଼ା ବାନ୍ଧି ଠେକିଓର କାରଖାନାକୁ ପଠାଇ ଦେଉଥା'ନ୍ତି । କାରଖାନାର କାମ ହେଲା ମେସିନ୍‌ରେ ସମାନ ଭାବରେ କାଟି ଦେଇ ବିଡ଼ା ବାନ୍ଧିବାକୁ ଚାଳିଶିଘୋଟ ପରିବାରଙ୍କୁ ଦେଇଦେବା ।

'କାରଖାନା' ବୋଲି କହିଲା ବେଳକୁ ଶୁଣାଯାଉଛି ସତେ ଯେପରି ବଡ଼ ବଡ଼ ମେସିନ୍ ବସିଛି । ପ୍ରକୃତରେ ତା ନୁହେଁ । ପତଳା କାଠର କାନ୍ଥ ଦେଇ ଗୋଟିଏ ଘରେ ମେସିନ୍‌ଟିଏ ବସିଛି । ସେହିଟିକୁ କୁରଣାକାଳଆ ବୋଲି କହିଲେ କେହି ବୋଧହୁଏ ଆପତ୍ତି କରିବେ ନାହିଁ । ଏହି ଗୋଟିକ 'କୁଟୀର ଶିଳ୍ପ ମେସିନ୍' ଠୋକିଓର ଚାଳିଶଟି ଓ ଉତ୍ତର ଜାପାନର ପ୍ରାୟ ଯେତିକି ପରିବାରଙ୍କୁ କାମ ଯୋଗାଇ ଦେଉଛି । ସେହି କାରଖାନାରେ ୪୦ ଜଣ ଯୁବକ ଯୁବତୀ କାମ କରୁଛନ୍ତି । ସେମାନଙ୍କର କାମ ହେଉଛି ପେନ୍‌ସିଲଗୁଡ଼ିକୁ କାଟି ଫିନିସ୍ କରିଦେବେ, ପାଲିସ୍ କରିଦେବେ, ରଙ୍ଗଦେଇ ଦେବେ ଓ ତା ଉପରେ ନାମ ଲେଖି ଯୋଡ଼ି ଦେବେ । ଏହି କାରଖାନା ମୋଟ ଉପରେ ଶହେଟି ପରିବାରଙ୍କୁ ପାଳୁଛି । ଶହେ ପରିବାରଙ୍କ ମିଳିତ ଉଦ୍ୟମରେ କଞ୍ଚାମାଲ୍ ( ପେନ୍‌ସିଲ କାଠ ଓ ଗ୍ରାଫାଇଟ୍ )

ସଂଗ୍ରହଠାରୁ ଆରମ୍ଭ କରି ପେନସିଲ ତିଆରି କରି ବଜାରକୁ ଛାଡ଼ିବା ପର୍ଯ୍ୟନ୍ତ ସବୁକାମ ହୋଇ ଯାଉଛି ।

ଏମାନେ ବର୍ଷକରେ କେତେ ପେନ୍‌ସିଲ ତିଆରି କରନ୍ତି ଦେଖାଯାଉ । ବର୍ଷକୁ ଏମାନେ ମିଳିତ ଭାବରେ ୬ ଲକ୍ଷ ଗ୍ରୋସ୍ ବା ୮୬,୪୦୦,୦୦୦ଟା ପେନ୍‌ସିଲ ଉତ୍ପାଦନ କରୁଛନ୍ତି । ଯେଉଁ ପେନ୍‌ସିଲ ମୁଣ୍ଡରେ ଟିକିଏ ଟିକିଏ ରବର ଦେଇ ଦିଅନ୍ତି ସେଗୁଡ଼ିକ ଟିକିଏ ବେଶି ଦାମ୍‌ରେ—ରବର ନ ଦେଇଥିଲେ ଅଳ୍ପ ଦାମରେ ବିକି ହୁଏ ।

ପୁଣି ଶୁଣନ୍ତୁ କେତେ ଦାମ୍‌ରେ ବିକି ହୁଏ । ଡର୍ଜନ ପ୍ରାୟ ଚଉଦ ପଇସା ବା ତିନିଅଣା ବିକି କରି ଦିଆଯାଏ । ୬ ଲକ୍ଷ ଗ୍ରୋସ୍‌କୁ ପନ୍ଦର ଷୋଳ ଲକ୍ଷ ଟଙ୍କା ମିଳିଗଲା । ଶହେଟି ପରିବାର ଭିତରେ ଏ ଟଙ୍କା ବାଣ୍ଟି ହୋଇଯାଏ !

ଇଂରେଜମାନେ ଆମକୁ କୁହନ୍ତି ଜାପାନୀ ଜିନଷ ଶସ୍ତା ହେଉଛି । ଶ୍ରମିକମାନେ ଅତି ଅଳ୍ପ ମଜୁରୀ ନଅନ୍ତି ବୋଲି । ଅଳ୍ପ ମଜୁରୀ ନେଇ ସେମାନେ ବଡ଼ ଦୁଃଖରେ ଥା'ନ୍ତି । କିନ୍ତୁ ଏବେ ଆମେ ବୁଝି ପାରିବା ସେମାନେ କାହିଁକି ଓ କିପରି ଶସ୍ତାରେ ପେନ୍‌ସିଲ ଯୋଗାଇ ଦେଇ ପାରୁଛନ୍ତି । ପୃଥିବୀର ଗୁଡ଼ିଏ ଦେଶକୁ ଏହି କାରଖାନାର ପେନ୍‌ସିଲ ରପ୍ତାନୀ କରା ଯାଉଛି ।

ଅନେକ ଲୋକ ମିଳି ଗୋଟାଏ 'କାରଖାନାକୁ' କୁଟୀର ଶିଳ୍ପରେ କିଭଳି ପରିଣତ କରି ଦେଉଛନ୍ତି ତାହା ଜଣା ପଡ଼ିବ ଏହି ଗୋଟିକ ଉଦାହରଣରୁ । ଲୁଗାବୁଣା ବିଷୟରେ ଠିକ୍ ଏହିଭଳି କୁହା ଯାଇପାରେ ।

## କାମବଣ୍ଟା ବିଦ୍ୟାର ଶେଷସୀମା

କାମ ବାଣ୍ଟି ନେଇ ଗୋଟିଏ ଗୋଟିଏ କାମରେ ହାତକଟା ହୋଇ ଯାଇ ଜାପାନୀମାନେ ଗୋଟିଏ ପଦାର୍ଥକୁ କିଭଳି ସହଜରେ

ଓ ଶସ୍ତାରେ ତିଆରି କରି ଦେଉଛନ୍ତି । ସେକଥା ଶୁଣନ୍ତୁ ଶ୍ରୀ ଚମନ୍‌ଲାଲ୍‌ଙ୍କଠାରୁ—ଗୋଟାଏ ବଡ଼ ବଜାରକୁ ମୋତେ ପଙ୍ଖା ତିଆରି କଭଳି ହେଉଛି ଦେଖାଇବା ପାଇଁ ନେଇଗଲେ । ବଜାର ଭିତରେ ଅନେକ ଗୁଡ଼ିଏ ଗଳି । ଏତ ଗଳିରେ କେତେକ ପଙ୍ଖାର ଗୋଟିଏ ଗୋଟିଏ ଅଂଶ ବା ପାର୍ଟ ତିଆରି କରିବାରେ ଲାଗିଛନ୍ତି । ଅନ୍ୟ ଅଂଶ ବା ପାର୍ଟ ତିଆରି ସହିତ ସେମାନଙ୍କର କୌଣସି ସଂପର୍କ ନାହିଁ । ଛୋଟ ଘରେ କାମ ହେଲାପରେ ଯାଇ ଗୋଟିଏ ପଙ୍ଖା ତିଆରି ହେଉଛି । ପ୍ରଥମ ଘରେ କଞ୍ଚା ବାଉଁଶକୁ ଲମ୍ବା ଲମ୍ବା କାଠି କାମ ଶେଷ କରିଦିଆ ଯାଉଛି । ତା' ପର ଘରେ ୮ ଇଞ୍ଚ ଲମ୍ବର ପଙ୍ଖା ବେଣ୍ଟ କଟା ହୋଇ ଯାଉଛି । ତୃତୀୟ ଘରେ ବେଣ୍ଟକୁ ପାଲିସ୍ କରି ରଙ୍ଗେଇ ଦେଉଛନ୍ତି । ଚତୁର୍ଥ ଘରେ କାଠ ଉପରେ ଖୋଦେଇ କାମ ହେଉଛି । ପଞ୍ଚମ ଘରେ ଛପା ସିଲ୍‌କ କନା ଖଞ୍ଜି ଦିଆଗଲା । ଷଷ୍ଠ ଘରେ ହ୍ରିଙ୍ଗ୍ ଖଞ୍ଜିଦେଇ ଅତ ଯତ୍ନରେ ଏତ ଖଣ୍ଡକୁ ଭାଙ୍ଗି ଦେଉଛନ୍ତି ଓ ଦେଖୁଛନ୍ତି ପଙ୍ଖାଟି ସୁନ୍ଦର ହୋଇ ଉଠୁଛି କି ନାହିଁ । ଏ କାମ ଶେଷ ହେଲା ବେଳକୁ ହୋଲ୍‌ସେଲର ବା ମୋଟାବେପାରୀ ଆସି ବାକ୍‌ସ ଯୋଗାଇ ଦେଉଛି—ପୃଥିବୀର ଗୃରିଆଡ଼କୁ ସୁନ୍ଦର ଜାପାନୀ ସିଲ୍‌କ୍‌ଫ୍ୟାନ ବିକି ହେବା ପାଇଁ ଗୃଲିଲା ।

ଶ୍ରୀଚମନ୍‌ଲାଲ ଏହି ପଙ୍ଖା ଅଧ୍ୟାୟର ଶେଷରେ ଲେଖିଛନ୍ତି—ପ୍ରତ୍ୟେକ ଘରେ ଯେଉଁମାନେ ଏ କାମ କରୁଛନ୍ତି ସେମାନେ ମନ ଲଗାଇ, ନିଜର ପଡିଆରି ବଜାୟ ରଖି, ସାଧୁସଚ୍ଚୋଟ ମନୋବୃତ୍ତି ନେଇ କାମ କରି ଯାଉଛନ୍ତି ବୋଲି ଜାପାନୀ ସିଲ୍‌କଫ୍ୟାନ୍ ପୃଥିବୀ ବଜାରରେ ଆଦର ପାଉଛି ।

## ବାଉଁଶ ଓ ବିଜୁଳି ମିଶିଲେ ଟଙ୍କା

ଶ୍ରୀ ଚମନ୍‌ଲାଲ ତିନୋଟି 'ବାଉଁଶ-ଗାଁ'କୁ ଯାଇଥିଲେ । 'ବାଉଁଶ ଗାଆଁ'ମାନେ ଯେଉଁ ଗାଁରେ, ନାନା ପ୍ରକାରର ଚମତ୍କାର ବାଉଁଶ ପଦାର୍ଥ ତିଆରି ହେଉଛି । କୋବେ ସହରର ନିକଟରେ ୟୁମାଗୁଚି ବୋଲି



ବାଉଁଶ କାରିଗରିରେ ମହିଳା



ବାଉଁଶରେ ସୁନ୍ଦର କାରିଗରି

ଯେଉଁ ଗାଁ ଅଛି ସେଠିକି ଇଲେକ୍‌ଟ୍ରିକ୍ ଟ୍ରେନ୍ ଓ ବସ୍ ଯାଏ । ବଡ଼ ଗାଁ'ଟାର ସମସ୍ତେ ବାଉଁଶରେହିଁ ନାନା ପ୍ରକାରର ଜିନିଷ ତିଆରି କରୁଛନ୍ତି । ବାଉଁଶରୁ ଟୋକେଇ, ଫୁଲ ଗୁଙ୍ଗୁଡ଼ି ଲଙ୍ଗ୍‌ବାକ୍ସ, ଗୁମ୍ନା ଚେଟ୍ର ପ୍ରଭୃତି ଦୈନନ୍ଦିନ କାରବାରର ସାମଗ୍ରୀ ତିଆରି ହେଉଛି । ଗାଁର ଯେ ପ୍ରଧାନ ସେ ଚମନଲାଲଙ୍କୁ ବୁଲାଇ ନେଇଗଲେ । ସେହି ଭଦ୍ରଲୋକ ଗାଁରେ ତିଆରି ହେଉଥିବା ସବୁତକ ମାଲ୍ କିଣିନେଇ ବେପାରୀମାନଙ୍କୁ ଯୋଗାନ୍ତି । ତାଙ୍କ ଗୋଦାମରେ ଯେତେକ ମାଲ୍ ଧାଡ଼ି ଧାଡ଼ି ହୋଇ ସଜାଇ ରଖା ଯାଇଥିଲା ସେତକ ଗଣିଲେ ଲକ୍ଷେକରୁ କମ୍ ହେବ ନାହିଁ । ଗାଁରେ ଯେଉଁମାନେ କାମ କରୁଛନ୍ତି ସେମାନେ ଭଲ ପୋଷାକ ପିନ୍ଧିଛନ୍ତି । ସୁଖରେ ରହିଲା ଭଳି ଓ ଭଲରେ ଖାଇଲା ଭଳି ଜଣା ପଡୁଥାନ୍ତି । ସମସ୍ତେ ସୁଖରେ ଦିନ କାଟୁଥାନ୍ତି ବୋଲି ମନେ ହେଲା । ଗାଁ' ପ୍ରଧାନଙ୍କ ଘର ଦେଖିଲେ ସେ ଜଣେ ଧନୀଲୋକ ବୋଲି ବେଶ୍ ବୁଝି ପଡୁଛି । ଘରେ ମନ୍ଦିରଟିଏ—ସେଥିରେ ବୁଦ୍ଧଙ୍କ ମୂର୍ତ୍ତି ରହିଛି । ଯେ କୌଣସି ଭାରତୀୟଙ୍କୁ ଦେଖିଲେ ଜାପାନୀମାନେ ବଡ଼ କୃତଜ୍ଞ ହେଲା ଭଳି କୁହନ୍ତି ଯେ ଭାରତରୁ ସେମାନେ ବୁଦ୍ଧଙ୍କୁ ପାଇଛନ୍ତି ।

ଗାଁର କାରିଗର ପକ୍ଷରେ ବିଜୁଳି ଶକ୍ତିହିଁ ଟଙ୍କା । ତା ବାଉଁଶ ସଙ୍ଗରେ ବିଜୁଳି ଶକ୍ତି "ମିଶି" ଗଲାରୁ ସେ ଆମେରିକା ବଜାରରୁ ମଧ୍ୟ ପଇସା ଟାଣି ଆଣୁଛି । ଗାଁ ଭିତରକୁ ପଶିଗଲେ ଦେଖିବ କଳ ଯନ୍ତ୍ରରେ ଜାପାନୀ ଝିଅମାନେ ବାଉଁଶ ଚିକ୍ ପରଦା ବୁଣୁଛନ୍ତି ଓ ମନମତାଣିଆ ଗୀତ ବୋଲୁଛନ୍ତି ବା ଜାପାନୀ ଜାତୀୟ ସଙ୍ଗୀତ ଗାଉଛନ୍ତି । ଆମେରିକା ବଜାର ପାଇଁ ପରଦା ଓ ଟୋକେଇ ଏହି ଗାଁରୁ ଯାଉଛି । ବାଉଁଶ ତିଆରି ମାଲ୍ ରପ୍ତାନି କରି ଏହି ଗାଁ ୮୦ ଲକ୍ଷରୁ କୋଟିଏ ପର୍ଯ୍ୟନ୍ତ ଟଙ୍କା ରୋଜଗାର କରୁଛି ।

ବାଉଁଶର ଜନ୍ମଭୂମି ଭାରତରେ, ଜାପାନଠାରୁ କମ୍ ମଜୁରୀରେ ମୂଲିଆ ମିଳିବେ । ଜାପାନଠାରୁ ଭାରତରେ ଧାନ, ଚାଉଳ, ଡାଲି, ପରିବା ଇତ୍ୟାଦି ଚଳିବା ମାଲ ଶସ୍ତା । ଭାରତ ଇଚ୍ଛାକଲେ ଆମେରିକା

ବଜାରରେ ବାଉଁଶ ତିଆରି ମାଲ୍ ବିକି କରି ପାରିବ ଓ ଦକ୍ଷିଣ ଆମେରିକାରେ ନୂଆ ବଜାର ଖୋଲି ପାରିବ ବୋଲି ଶ୍ରୀଚମନ୍‌ଲାଲ ମତ ଦେଇଛନ୍ତି । ଜଣେ ଲୋକ କଳ ଯନ୍ତ୍ରରେ ବାଉଁଶ ଚିକ୍ ବା ପରଦା ବୁଣି ଦିନକୁ ତିନି ଚାରି ଟଙ୍କା ରୋଜଗାର କରି ପାରୁଛି । ବୋମା ମାଡ଼ରେ ଧ୍ୱସ୍ତ ବିଧ୍ୱସ୍ତ ହୋଇଥିବା ଟୋକିଓ ସହରର ଲୋକଙ୍କ ସହିତ ତୁଳନା କଲେ ଏହି ବାଉଁଶ ଗାଁ'ର ଲୋକେ ଭଲ ଚଳୁଛନ୍ତି ବୋଲି ଦେଖାଗଲା ।

ଆଉ ଗୋଟିଏ 'ବାଉଁଶ ଗାଁ'କୁ ପଶିଗଲେ ଦେଖିବ ବାଉଁଶରୁ ଅତି ସୁନ୍ଦର ସୁନ୍ଦର ବୋତାମ, ବ୍ରୁଶ, ବଂଶୀ ଓ ନାନା ପ୍ରକାରର ସୁନ୍ଦର ସୁନ୍ଦର ଜିନିଷ ତିଆରି ହେଉଛି । ସେ ଗାଁ ତିଆରି ମାଲ୍ ଦକ୍ଷିଣ ଆମେରିକା ବଜାରରେ ଖୁବ୍ କଟୁଛି ।

## ଶହେ ପ୍ରକାରର ବାଉଁଶ

ଭାରତ ଜାପାନକୁ ବୌଦ୍ଧଧର୍ମ ଦେଇଛି । ତା ପାଖକୁ ଭାରତର ଜାପାନକୁ ବଡ଼ ଦାନ ହେଉଛି ବାଉଁଶ । ଆଜି ସେ ଦେଶରେ ଶହେରୁ ଅଧିକ ପ୍ରକାରର ବାଉଁଶ ଦେଖିବାକୁ ମିଳୁଛି । ତାକୁ ସେମାନେ ଅସଂଖ୍ୟ ପ୍ରକାରରେ କାମରେ ଲଗାଇ ପଇସା ଆଣୁଛନ୍ତି । ସେଠାରେ ତାଙ୍କୁ ଦେଖିବ ସେ ବାଉଁଶର ୧୪୦୦ ପ୍ରକାରର ବ୍ୟବହାର ହେଉଛି । ଜାପାନୀମାନଙ୍କ ନବବର୍ଷର ଉତ୍ସବରେ ଦେଶର ଏ ମୁଣ୍ଡରୁ ସେ ମୁଣ୍ଡ ବାଉଁଶରେ ସଜାଇ ଦିଆଯାଏ । ବାଉଁଶକୁ ସେ ଜାତି ପୂଜା କରୁଛି । ଆମ ଦେଶରେ କଦଳୀ ଗଛକୁ ଶୁଭଚିହ୍ନ ବୋଲି ପବ୍ବପର୍ବାଣୀରେ ପୋତିଲା ଭଳି ସେମାନେ ବାଉଁଶକୁ ପୋତୁଛନ୍ତି । କାଠରେ ଚଉକି, ଟେବୁଲ୍, ବେଞ୍ଚ୍ ତିଆରି କଲେ ଯେପରି ଦେଖାଯା'ନ୍ତା ବାଉଁଶରେ ତିଆରି କଲେ ତା'ଠାରୁ ଅଧିକ ସୁନ୍ଦର ଦେଖାଯାଏ । ବାଉଁଶରେ ତିଆରି ଟାଇଲ ପ୍ରଭୃତି ବଡ଼ ସୁନ୍ଦର ଦେଖାଯାଏ । ଲଣ୍ଠନ, ଛତାବେଣ୍ଟ, ଛତା, ବହି ରଖିବା ସେଲ୍ଫ ନାନାପ୍ରକାରର ଖାଇବା ବାସନ, ଘରେ କାରବାର କରିବା ପାଇଁ ଭିନ୍ନ

ଭିନ୍ନ ପ୍ରକାରର ପାତ୍ର—ବାଉଁଶରେ କଣ ଯେ ତିଆରି ନ ହେଉଛି କହି ହେବ ନାହିଁ । ଟୋକିଓ ସହରରେ ଗୋଟାଏ କଂପାନୀର କାମ ହେଲା ଆମେରିକାର ମହିଳାମାନେ ଧରିବା ପାଇଁ ହ୍ୟାଣ୍ଡ ବ୍ୟାଗ୍, ଲେଡ଼ିଜ୍ କଂପାକ୍ଟ (Compacts), ସିଗାରେଟ୍ ଖୋଳ ଓ ଚେସ୍‌ବୋର୍ଡ଼ ବାଉଁଶରେ ତିଆରି କରିବା । ଆମେରିକା ବଜାରରେ ବାଉଁଶ ତିଆରି ହ୍ୟାଣ୍ଡ ବ୍ୟାଗ୍ ଅବାକି ହୋଇ ରହୁନାହିଁ ।

କଳାଜ୍ଞାନ ଯେଉଁ ଜାତିର ଅଛି ସେ ଜାତି ମାଟିକୁ ମଧ୍ୟ ସୁନା ରୂପ ଦେଇପାରେ । ଆମ ରୋଷାଇଘର ଚୂଲର ବାଉଁଶ ଧୂଆଁରେ ପାଚି ଯାଇଥାଏ । ଧୂଆଁ ପଗୁ ବା ଧୂଆଁ ସେକା ବାଉଁଶର ରଙ୍ଗର ବିଶେଷଣ ଅଛି । ସେହି ରଙ୍ଗଟା ଆମେରିକା ମହିଳାମାନଙ୍କ ମନକୁ ବେସ୍ ଘେନଲା । ସେହି ବାଉଁଶରେ ହ୍ୟାଣ୍ଡ ବ୍ୟାଗ୍ କରି ଦେଲାରୁ ବିକିର ଅସୁବିଧା କିଛି ନାହିଁ । ବାଉଁଶରେ ବାଦ୍ୟଯନ୍ତ୍ର ତିଆରି କରିବାଟା ଜାପାନୀ ଲୋକଙ୍କ ବିଶେଷତ୍ୱ । ଶ୍ରୀକୃଷ୍ଣ ଯେଉଁଭଳି ବଂଶୀ ବଜାଉଥିଲେ ସେହି ଭଳି ବଂଶୀ ଜାପାନୀମାନଙ୍କର ବଡ଼ ଆଦରର ଚିଜ । ଜାପାନର ପ୍ରସିଦ୍ଧ ନାରା ଦେଉଳରେ ବଂଶୀ ବଜାଉଥିବା ଶ୍ରୀକୃଷ୍ଣ ମୂର୍ତ୍ତି ରହିଛି ।

ଆଜିକାଲି ପ୍ଲାଇଉଡ୍ ଶିଳ୍ପର ପ୍ରସାର କିଭଳି ହେଲାଣି ଆମ ଭିତରୁ ଅନେକ ଜାଣନ୍ତି । କାଠକୁ ଅତି ପତଳା କରି ଚିରି ଛକ ପକାଇଲା ଭଳି ପରସ୍ତ ପରସ୍ତ ଅଠା ଦେଇ ମୋଟ ପଟା କରିଦେଲେ, ପଟାଟା ସହଜରେ ଭାଙ୍ଗିଯାଏ ନାହିଁ ବା ସିଧା ଫାଟି ଯାଏ ନାହିଁ । ଆଜିକାଲି ସେହି ଉପାୟରେ ତିଆରି ପଟାରେ ନାନା କାମ କରା ଯାଉଛି । ଜାପାନରେ ବାଉଁଶକୁ ଏହି କାମରେ ଲଗା ଯାଉଛି ବାଉଁଶର 'ପ୍ଲାଇଉଡ୍' ଜାପାନୀମାନଙ୍କର ଗୋଟାଏ ବଡ଼ ଶିଳ୍ପ ।

## ଭାରତ ଓ ବାଉଁଶ

ଶ୍ରୀ ଚମନଲାଲଙ୍କର ଦୃଢ଼ ବିଶ୍ୱାସ ଓ କ୍ରିୟାବମବ କରି ସେ ବୁଝାଇ ଦେଇଛନ୍ତି ଯେ ଭାରତ ଯଦି ଇଚ୍ଛା କରିବ, ଉତ୍ତର ଆମେରିକା

ଓ ଦକ୍ଷିଣ ଆମେରିକା ବଜାରରୁ କୋଟି କୋଟି ଟଙ୍କାବାଉଁଶ ତିଆରି ଜିନଷ ବିକ ନେଇ ଆସି ପାରିବ । ଜାପାନର ଅନେକ ଗାଁ ସେହିଭଳି ଆଣୁଛନ୍ତି । ଆମ ଦେଶରେ ଆମେ ଜାପାନରେ ତିଆରି ହେଉଥିବା ୧୪୦୦ ପ୍ରକାରର ଜିନଷ ଭିତରୁ କେବଳ ୧୪୦ଟି କଲେହିଁ ଆମ ଉଦ୍ଦେଶ୍ୟ ସାଧିତ ହେବ ।

ଆମଦେଶରେ ଯୁକ୍ତି କରାଯାଉଛି ଯେ ଜାପାନରେ ଯେଉଁ ଜାତର ବାଉଁଶ ଅଛି ଆମ ଦେଶରେ ନାହିଁ—ତେଣୁ ସେମାନେ ଯେଉଁ ଜିନଷ ତିଆରି କରି ପାରୁଛନ୍ତି ଆମେ ପାରିବା ନାହିଁ । ସେମାନଙ୍କୁ ଉତ୍ତର ଦେଇ ଚମନଲାଲଜୀ କହିଛନ୍ତି—ଏହି ଦେଶରୁ ବାଉଁଶ ନେଇ ଜାପାନୀମାନେ ନୂଆ ନୂଆ ଜାତିର ଓ ସୁନ୍ଦର ବାଉଁଶ ଉତାରିଛନ୍ତି । ଯୁକ୍ତପ୍ରଦେଶ, ବିହାର ଓ ଆସାମକୁ ଲାଗିଥିବା ହିମାଳୟ ଅଞ୍ଚଳରେ ଓ ତ୍ରିବାଙ୍କୁର ଓ ଦକ୍ଷିଣ ଭାରତର ପାହାଡ଼ିଆ ଅଞ୍ଚଳରେ ଜାପାନୀ ବାଉଁଶ ଆଣି ଲଗାଇଲେ ନିଶ୍ଚୟ ଭଲ ବାଉଁଶ ଉତାରି ହେବ । ଭଲ ବାଉଁଶ ପାଇବାଟା ବଡ଼ କଥା ନୁହେଁ । ଅସଲ ପ୍ରଶ୍ନ ହେଉଛି ଆମେ ସେ ଦେଶରୁ ଭଲ କାରିଗର ମଗାଇ ଆମ ଲୋକଙ୍କୁ ତାଲିମ କରିବା, ସେମାନେ ଯେଉଁ ଭଳି ମେସିନ ବ୍ୟବହାର କରୁଛନ୍ତି ସେହିଭଳି ମେସିନ୍ ଆଣିବା ବା ତିଆରି କରିବା ଓ ଜାପାନର ଯେଉଁ ସବୁ ପେଟେଣ୍ଟ ଅଛି ସେଥିରୁ କିଛି କିଣିବା । ତା' ଯଦି କରି ପାରିବା ଏହି ଦେଶରେ ଆମେ ବାଉଁଶର ଟାଇଲ, ବାଉଁଶର ପ୍ଲାଇଉଡ୍ ଦେଖିବା ।

ସମଗ୍ର ଦେଶରେ ୧୪୦୦୦ 'ଘର—କାରଖାନାରେ' ବର୍ଷକୁ ୧୬୦ ଲକ୍ଷ ର୍‌ୟାକ୍, ୧୫୦ ଲକ୍ଷ ବନଶୀ ଛଡ଼, ୧୩୦ ଲକ୍ଷ 'ବାଉଁଶ-କାଗଜ' ପଙ୍ଖା, ୨୦ ଲକ୍ଷ 'ବାଉଁଶ-ସିଲ୍‌କ' ପଙ୍ଖା, ୧୦ ଲକ୍ଷ କାଗଜ ଲଣ୍ଠନ, ୨ ଲକ୍ଷ ବେତ ଚଉକି—ଏ ଭଳିକ ୧୬୦ ଲକ୍ଷ ଖେଳଣା ତିଆରି କରି ବିଦେଶ ବଜାରକୁ ପଠାଇ ଦିଆଯାଉଛି । ୧୪୦୦ ପ୍ରକାର ଜିନଷରୁ ଏଠାରେ ପାଞ୍ଚ ଛ'ଟିର ସଂଖ୍ୟା ଦିଆଗଲା କେବଳ ଗୋଟାଏ ଧାରଣା ଦେବା ପାଇଁ ।

# ଜାପାନୀ କାଗଜ

ଜାପାନୀ ରଙ୍ଗୀନ୍ କାଗଜର ଫୁଲ ଆମ ପିଲାଙ୍କର କେଡ଼େ ଆଦରର ବସ୍ତୁ । ଦେଖିବାକୁ ଯେତକ ସୁନ୍ଦର, ଦାମ୍ ମଧ୍ୟ ସେତିକି ଶସ୍ତା । ଆମେ ଭାବୁଥିବୁ ଯେ ବଡ଼ ବଡ଼ କାରଖାନାରେ ସେ ଗୁଡ଼ା ତିଆରି କରି ଏତେ ଶସ୍ତାରେ ଯୋଗାଇ ଦେଉଛନ୍ତି । କିନ୍ତୁ ପ୍ରକୃତରେ ସେଗୁଡ଼ିକ ଜାପାନୀ ଘରେ ତିଆରି ହେଉଛି—ବଡ଼ କାରଖାନାରେ ନୁହେଁ ।

ସେ ଦେଶର ଗୋଟିଏ 'କାଗଜ-ଗାଁ'କୁ ଗଲେ କ'ଣ ଦେଖିବା ତାହା ଜଣା ପଡ଼ିବ ଚମନ୍‌ଲାଲ୍‌ଜୀଙ୍କ ବର୍ଣ୍ଣନାରୁ । ତାଙ୍କରି ଆଖିରେ ଆମେ ସେ ଗାଁ ଦେଖିଲେ ଭଲ ହେବ । ସେ ନିଜେ ଯାଇଛନ୍ତି ଓ ସବୁ କଥା ତନ୍ନ ତନ୍ନ କରି ବୁଝିଛନ୍ତି ବୋଲି ତାଙ୍କ ବର୍ଣ୍ଣନା ବଡ଼ ଚମତ୍କାର ହୋଇଛି । ସେ ଲେଖିଛନ୍ତି—

ଓଗାବା ଗାଁଟି ଗୋଟାଏ ପାହାଡ଼ ତଳେ । ସେ ଗାଁକୁ ଗଲେ କାଶ୍ମୀରର ପହଲାମ ଗାଁର ଚିତ୍ର ମନ ଭିତରେ ଆଙ୍କି ହୋଇଯାଏ । ସେଇଠି ନଈ କୂଳରେ ଓ କାଗଜ କୁଟୀର ଶିଳ୍ପ ପାଇଁ ଯାହା କିଛି କଞ୍ଚାମାଲ୍ ଦରକାର ତା' ସବୁ ସେ ଗାଁରେ ଅଛି । ନଈର ସୁଅରେ ରେଷା ବା ତନ୍ତୁ ଧୋଇ ଆଣିବାକୁ ଭାରି ସୁବିଧା । ଗାଁର ୧୩୦୦୦ ଲୋକଙ୍କ ଭିତରୁ (ଆମ ଦେଶ ହୋଇଥିଲେ ୧୩୦୦୦ ଲୋକ ଥିବା ଗାଁକୁ ସହର ବୋଲି କହନ୍ତୁ) ୩୬୦୦ ଲୋକ ହାତରେ କାଗଜ ତିଆରିରେ ଲାଗିଛନ୍ତି । ପ୍ରତି ଘର ଗୋଟିଏ ଗୋଟିଏ ଛୋଟ କାଗଜ ତିଆରି କାରଖାନା ।

ସେ ପୁଣି ବର୍ଣ୍ଣନା କରିଛନ୍ତି—ଆମେ ଗଲୁ ଗୋଟିଏ ଘରକୁ କାଗଜ ତିଆରି ଦେଖିବା ପାଇଁ ଯିବା । ଘରର ମାଲିକଙ୍କର ବୁଢ଼ା ବୟସ ହୋଇ ଗଲାଣି । ତାଙ୍କର ଦ୍ୱିତୀୟ ପକ୍ଷ ସ୍ତ୍ରୀ ସେ ଘରେ ଅଛନ୍ତି । ବାପା, ମା, ଦୁଇଟି ଯୁବତୀ ଝିଅ ଓ ଜଣେ ଆତ୍ମୀୟ । ସମସ୍ତେ

କାମ କରୁଛନ୍ତି । ୩ ଫୁଟ୍ ଲମ୍ବ ଓ ୨ ଫୁଟ୍ ଓସାରର ୮୦୦ ଫର୍ଦ୍ଦ କାଗଜ ସେମାନେ ପ୍ରତି ଦିନ ତିଆରି କରି ଦେଉଛନ୍ତି । ପ୍ରତିଦିନ ସେମାନେ ଟ୧୧୧ ରୋଜଗାର କରନ୍ତି । ମାସକରେ ୨୫ ଦିନ କାମ କରନ୍ତି । ପାଞ୍ଚ ଦିନ ଛୁଟି । ଗାଁ ଭିତରେ ଗୋଟିଏ ଟେକ୍‌ନିକାଲ (କାରିଗରୀ) ସ୍କୁଲ ଅଛି—ଲାବୋରେଟୋରିଟିଏ ମଧ୍ୟ ରହିଛି । ସେହି ସ୍କୁଲରେ ଯୁବକ ଯୁବତୀମାନେ ସବୁ ପ୍ରକାରର କାଗଜ ତିଆରି କୌଶଳ ୬ ମାସ ପର୍ଯ୍ୟନ୍ତ ଶିଖନ୍ତି । ଟେକ୍‌ନିକାଲ୍ ସ୍କୁଲଟି ଚାରିଗୋଟି ଉଦ୍ଦେଶ୍ୟ ସାଧନ କରୁଛି । ସେଇଟି ପ୍ରଥମେ ହେଲ୍ପ ଟ୍ରେନିଂ ଇନ୍‌ଷ୍ଟି-ଚ୍ୟୁଟ୍ ବା ତାଲିମ କେନ୍ଦ୍ର, ଦ୍ୱିତୀୟରେ ମେସିନ୍ ମରାମତି କାରଖାନା, ତୃତୀୟରେ ଲାବୋରେଟାରୀ ଓ ଚତୁର୍ଥରେ ଗ୍ରାମ୍ୟ ଶିଳ୍ପର ମିଉଜିଅମ୍ । ସ୍କୁଲ ହତା ଭିତରକୁ ପଶିଗଲେ ପ୍ରଥମେ ଆଖିରେ ପଡ଼ିଯିବ କାଗଜ ଯେଉଁ କାଠରୁ ତିଆରି ହେଉଛି ସେହି କାଠର ଗଛ । ହାତ ତିଆରି କାଗଜପାଇଁ ବାଉଁଶ ଦରକାର ହୁଏ ନାହିଁ ।

## "ଜାପାନୀ କାଗଜ"

ଯେଉଁ କାଗଜରେ ଖବର କାଗଜ ଛପା ହେଉଛି ( ନିଉଜ୍ ପ୍ରିଣ୍ଟ ), ପାର୍ଶଲ ବନ୍ଧା ହେଉଛି, ଛୋଟ ବଡ଼ ବାକ୍‌ସ ତିଆରି ହେଉଛି ତାକୁ "ଜାପାନୀ କାଗଜ" ବୋଲି ଏଠାରେ କୁହା ଯାଉ ନାହିଁ । ଜାପାନୀ କାଗଜ କହିଲେ ଘରେ ତିଆରି ହେଉଥିବା ଗୋଟାଏ ସ୍ୱତନ୍ତ୍ର ପ୍ରକାରର କାଗଜକୁ ବୁଝାଏ ।

ଏହି କାଗଜ ପ୍ରତ୍ୟେକ ଜାପାନୀ ଘରେ ଦରକାର । ସେ ଦେଶର ଜଳବାୟୁରେ ଏହି କାଗଜ ଉପଯୋଗୀ ଥିବାରୁ ଆମ ଦେଶରେ ଦୁଆର ଝରକା କବାଟରେ କାଚ ଦେବା ଭଳି ସେ ଦେଶରେ କାଗଜ ଦେଇ ଦେଉଛନ୍ତି । ପାଶ୍ଚାତ୍ୟ ଦେଶରୁ ଘର ସଜାଇବା ପାଇଁ ନାନାପ୍ରକାର ଜିନିଷ ପହଞ୍ଚି ଯାଉଥିଲେ ମଧ୍ୟ ଜାପାନୀମାନେ କାଗଜକୁ ଛାଡ଼ି ପାରିବେ ନାହିଁ ।

ବିଦେଶୀ ବେପାରୀ ମାନେ ଏଣିକ ଜାପାନୀ କାଗଜ ବେ ବେଶି ଖୋଜିଲେଣି । ବହି ବାନ୍ଧିବା, ଘର ଭିତର ସଜାଇବା, ପୁଡ଼ିଆ ବାନ୍ଧିବା ପ୍ରଭୃତି ପାଇଁ ବାହାର ଦେଶମାନଙ୍କରେ ଏହି ସ୍ୱତନ୍ତ୍ର ପ୍ରକାରର ଜାପାନୀ କାଗଜର ଗ୍ରହିଦା ବଢ଼ିଲାଣି ।

## ଏ କାଗଜର ଇତିହାସ

ଏ କାଗଜର ସୁନ୍ଦର ଇତିହାସ ଅଛି । ୧୩୬୦ ବର୍ଷ ତଳେ ଜାପାନର ସମ୍ରାଟ୍ ସୁଇକୋଙ୍କ ପାଖକୁ କୋରିଆ ରାଜ୍ୟର ଜଣେ ପ୍ରତିନିଧି ଆସିଥିଲେ । ସେହି ପ୍ରଥମେ ଜାପାନୀ ମାନଙ୍କୁ ଶିଖାଇଲେ ଏହି ସ୍ୱତନ୍ତ୍ର ପ୍ରକାର କାଗଜ କଭଳି ତିଆରି କରାଯାଏ । ସେ ଯୁଗରେ ମଧ୍ୟ ୧୮୦ ପ୍ରକାରର କାଗଜ ତିଆରି କରିବା କୌଶଳ ସେଠା ଲୋକେ ଜାଣିଥିଲେ । ପ୍ରଥମେ ପ୍ରଥମେ ଜାପାନୀ କାଗଜ ସେତେ ମଜବୁତ୍ ହେଲା ନାହିଁ । ପ୍ରାୟ ୬୦୦ ବର୍ଷ ପରେ ଦ୍ୱାଦଶ ଶତାବ୍ଦୀ ବେଳକୁ 'ସୁପର-ଫାଇନ୍' କାଗଜ ତିଆରି ହେଲା ।

୧୭ଶରୁ ୧୯ଶ ଖ୍ରୀଷ୍ଟାବ୍ଦ ଭିତରେ ଖୁବ୍ ଭଲ କାଗଜ ଉତ୍ପୁରିଲା । ପ୍ରଥମ ଅବସ୍ଥାରେ କେବଳ ତିନି ପ୍ରକାର ପଦାର୍ଥରେ କାଗଜ ତିଆରି ହେଉଥିଲା—ଏଣିକ ଆଉ ଗୋଟାଏ ଚିଜରୁ ମଧ୍ୟ ତିଆରି ହେଲା ।

ଯେଉଁ ଋତୁରେ କାଗଜ ତିଆରି ହେଉଥାଏ ସେ ଋତୁରେ ଗାଁ ଭିତରକୁ ପଶିଗଲେ ଆମ ଦେଶରେ ନଡ଼ିଆ କତା ବାଡେ଼ଇଲା ଭଳି କାଗଜ-କାଠ ବାଡ଼ିଆ ଶବ୍ଦ ଶୁଣାଯିବ ଓ ଖଣ୍ଡେ ଖଣ୍ଡେ ପିଠଣାରେ ବାଡେ଼ଇଲା ବେଳେ ଗାଁ ଝିଅ ବୋହୂ ଗୀତ ବୋଲୁଥିବେ ।

କାରିଗରର ହାତର ବାହାଦୁରୀ ଜାପାନୀ କାଗଜରୁ ଫୁଟି ଉଠୁଥାଏ । କାଗଜକୁ ଶୁଖାଇବା ଉପରେ ତାର ସୌନ୍ଦର୍ଯ୍ୟ ନିର୍ଭର କରେ । ଫର୍ଦ୍ଦ ଫର୍ଦ୍ଦ କରି ଶୁଖାଇ ଠିକ୍ ଯେତକ ଶୁଖିଲେ ଚଳିବ

ଓ ସୌନ୍ଦର୍ଯ୍ୟ ଫୁଟି ଉଠିବ କେବଳ ସେଡକ ଶୁଖାଇ କାରିଗର କାଗଜ ଡକ ନେଇ ଘରେ ରଖି ଦେଉଥାଏ । ଜଣେ ଜଣେ କାଗଜ ଶୁଖା କାରିଗର ଦିନକୁ ହଜାରରୁ ୧୫୦୦ ଫର୍ଦ୍ଦ ଶୁଖାଇ ଉତାରି ଦିଏ । ଜାପାନୀ କାଗଜ ଦେହରେ କାଠ ରେସାର ଯେଉଁ ସୌନ୍ଦର୍ଯ୍ୟ ଫୁଟି ଉଠୁଥାଏ ତାହା ସମ୍ଭବ ହୁଏ ଶୁଖାଇବାର ବାହାଦୁରୀରୁ ।

ଆଜିକାଲି ଅବଶ୍ୟ ନାନା କେମିକାଲ୍ ବା ରସାୟନିକ ଦ୍ରବ୍ୟ ଦେଇ କାଗଜକୁ ସୁନ୍ଦର କରା ଯାଉଛି । କିନ୍ତୁ କଳ ଆଗରେ ହାତ ହାର୍ ମାନିନାହିଁ ; କାରିଗରର ହାତର ବାହାଦୁରୀ ଯେ କାଗଜରୁ ଫୁଟି ଉଠୁଛି । କଳ ଆସି ହାତ ସହିତ ପ୍ରତିଯୋଗିତା କରିବାକୁ ଠିଆ ହୋଇ ଯାଉଥିଲେ ମଧ୍ୟ ଜାପାନୀ ଗାଁ କାରିଗର ଦମ୍ଭର ସହିତ ଛାତିରେ ହାତ ମାରି କହୁଛି ଯେ ସେ କାଗଜର ଚାହିଦା ମେଣ୍ଟାଇ ଦେବ ଓ ଯୁଗ ଯୁଗ ଧରି ଜାପାନୀ କାଗଜର ଯେଉଁ ସୌନ୍ଦର୍ଯ୍ୟ, ମଜବୁତି ଓ ଉପଯୋଗିତା ରହିଛି ତାହା ବଜାୟ ରଖିବ ।

## କାଗଜ କ'ଣ ନ କରୁଛି !

ଜାପାନୀମାନେ କାଗଜରେ ୩୦୦ ପ୍ରକାରର ଜିନିଷ ତିଆରି କରୁଛନ୍ତି । ତାର ଚେମଡ଼ା ଗୁଣରୁ ସହଜରେ ଚିରିଯାଏ ନାହିଁ । ପଙ୍ଖା, ସ୍କ୍ରିନ୍, ଲଣ୍ଠନ—ସମୟେ ସମୟେ କପଡ଼ା ମଧ୍ୟ କାଗଜରେ ହେଉଛି । ଖଣ୍ଡେ ପତଳା ନରମ କାଗଜ ରୁମାଲର କାମ ଚଳାଇ ଦେଉଛି । କାଚ ଝରକାର କାମ କାଗଜ ଚଳାଇ ନେଉଛି ଓ ଘର ଭିତରେ କାଗଜ ବାଡ଼ ଦେଇ ଗୋଟାଏ ବଖରାକୁ ଦୁଇଟା କରି ଦିଆଯାଉଛି । କାଗଜର ଝୁଣ୍ଟୁଣି ବା ଝାଡ଼ୁରେ ଜାପାନୀ ଘରଣୀ ନିଜ ଘର ସଫା କରୁଛି । କେଉଁଠି କାଟି ହୋଇ ଯାଇ ରକ୍ତ ବହିଲେ କାଗଜ ହିଁ କନାର କାମ ଚଳାଇ ଦେଉଛି । 'ତେଲ କାଗଜ'ରେ ଛତା, ବର୍ଷାତି [ ରେନ୍‌କୋଟ ] ଏୟାରକୁସନ୍ ତିଆରି ହେଉଛି । ଇଉରୋପୀୟାନ୍ କାଗଜରେ ପାର୍ଶଲଟିକୁ ଡାଙ୍କି ଦେଲେ ପାଣି ପଡ଼ି ଭିତରଟା ଓଦା ହୋଇ ଯିବାର ଭୟ ଅଛି ଜାପାନୀ



କାଉଁଶର ଫୁଲ ଗୁଙ୍ଗୁଡ଼ା



ଧାନ ଅମଳ କଳ

କାଗଜରେ ମେ ଭୟ ନାହିଁ । କାଗଜରେ ଦଉଡ଼ି ବା ଡୋର ତିଆରି କରି ଘରେ ଶହେ ପ୍ରକାରର କାମ ଚଳାଇ ନିଆ ଯାଉଛି । 'ଚମଡ଼ା—କାଗଜ' ବୋଲି ଯାହାକୁ ନାଁ ଦେଇଛନ୍ତି ସେଥିରେ ବାକ୍ସ ତିଆରି କରା ଯାଉଛି । ଗୋଟାଏ ପ୍ରକାର କାଗଜର ବିଦେଶରେ ଖୁବ୍ ଆଦର—କାରଣ ସେଥିରେ ଭଲ ଚିତ୍ର ବହି ବା ମାଗାଜିନ୍ ଛପା ହେଉଛି । ସେ କାଗଜରେ କଲମରେ ଲେଖି ହେବ ନାହିଁ, କାରଣ ଫୁଟି ଯିବ—ତୂଳିରେ ସୁନ୍ଦର ଲେଖି ହେବ ।

## ଦିଆସିଲି ତିଆରି ରହସ୍ୟ

ଦିଆସିଲି ତିଆରି ଶିଳ୍ପର ଉନ୍ନତି ଜାପାନରେ ଏତେ ଅସମ୍ଭବ ପ୍ରକାର ହୋଇ ଯିବାର ପ୍ରଧାନ କାରଣ ହେଉଛି କୁଟୀର ଶିଳ୍ପ ଭାବରେ ହିଁ ଦିଆସିଲି ତିଆରି ଚାଲିଛି । ଜାପାନୀ ପରିବାରର ଲୋକେ ଯେଉଁ ଘରେ ଶୁଆବସା କରନ୍ତି ସେହି ଘରେ ଦିଆସିଲି ତିଆରି କରନ୍ତି । ସ୍ୱତନ୍ତ୍ର ଘର ଦରକାର ହୁଏ ନାହିଁ । ସନ୍ଧ୍ୟା ପରେ ଦିଆସିଲି ତିଆରି ଶେଷ ହୋଇଗଲା; ଓଳେଇ ଆଳେଇ ଦେଲେ ଶୋଇବା ଘର ହୋଇଗଲା । ଯେଉଁମାନେ ଏହାକୁ ତିଆରି କରନ୍ତି ସେମାନେ ଯେ ଖୁବ୍ ଭଲ ହାତ କାମ ଜାଣିଥିବା ଲୋକ ହୋଇଥିବେ, ଏଭଳି କିଛି ନାହିଁ । ଏ ଶିଳ୍ପଟାକୁ ଚଳାଇଛନ୍ତି ହାତକାମ ବିଷୟରେ ବିଶେଷ ଅଭିଜ୍ଞତା ନ ଥିବା ସ୍ତ୍ରୀଲୋକମାନେ ଓ ପିଲାମାନେ । ଯେଉଁମାନଙ୍କର କାରିଗରୀ ହାତ ଅଛି ସେମାନେ ଏ କାମ କରିବା ଦରକାର ପଡ଼େ ନାହିଁ । ଗୋଟେ ଗୋଟେ ମେସିନ୍‌ରେ ଦିଆସିଲି ଖୋଲ ପତଲା କାଠକୁ ସାଇଜ୍ ଅନୁସାରେ କାଟି ଏମାନଙ୍କ ଘରେ ଦେଇ ଦିଆ ହେଉଛି । ଦିଆସିଲି ଖୋଲଟିମାନ ସେହି ସାଇଜି କାଠ ଖଣ୍ଡି ତିଆରି କରିଦେଇ ଉପରେ ଅଠାରେ ଲେବୁଲ୍ ମାରି ଦିଅନ୍ତି । ଘରେ ସେ କାମ କଲାବେଳେ ସେମାନେ ଖେଳୁଛନ୍ତି କି କାମ କରୁଛନ୍ତି ବାରି ହେବ ନାହିଁ । ହାତ ଖୁବ୍ ଫୁର୍ତ୍ତିରେ ଚାଲୁଥାଏ । ଖୋଲଗୁଡ଼ା ତିଆରି ହୋଇଗଲେ ପାଖ 'କାରଖାନା'କୁ ପଠାଇ ଦିଆଯାଏ । ସେଠି

ସ୍ତ୍ରୀଲୋକମାନେ ମୂଲାଏ ଲେଖାଁ ଦିଆସିଲି କାଠି ଆଣି ଖୋଳ ଭିତରେ ପୂରାଇ ଦିଅନ୍ତି । ସେମାନଙ୍କ ହାତ ଏତେ ତାଲିମ ଯେ ଠିକ୍ ଯେତିକ କାଠି ଗୋଟାଏ ଖୋଳରେ ପଶିବାର କଥା ଏକାଥରକେ ଠିକ୍ ସେତିକ ଉଠାଇ ଆଣନ୍ତି—କମ୍ ବେଶି ହେବାର ଭୟ ନ ଥାଏ ।

## ଘରଟା ଲୁଗା କାରଖାନା

ଜାପାନ କୁଟୀର ଶିଳ୍ପର ଜାପାନୀ ଶସ୍ତା ଲୁଗାର ଜ'ଣ ସମ୍ପର୍କ ଅଛି ଅନ୍ୟ ଏକ ଅଧ୍ୟାୟରେ ହୁଏତ କୁହାଯିବ, ଏଠି କେବଳ ଟିକିଏ ସୂଚନା ଦିଆଯାଉଛି । ଜାପାନର ବସ୍ତ୍ର ଶିଳ୍ପର ସାତଭାଗରୁ ୬ ଭାଗ ଘରେ କୁଟୀର ଶିଳ୍ପ ଓ ଛୋଟ କାରଖାନା ଜରିଆରେହିଁ ହୁଏ ଓ ସେ ଦେଶର ସବୁଠୁଁ ଭଲ ଲୁଗା ବଡ଼ ବଡ଼ କଳରେ ନ ହୋଇ ଘରେହିଁ ବୁଣାଯାଏ । ଗୋଟିଏ ଘରେ ଛ'ଟି କଳ ତନ୍ତ ପଡ଼ିଛି । ବିଜୁଳିରେ ଚାଲୁଛି । ସ୍ୱାମୀ ସ୍ତ୍ରୀ କାମ କରୁଛନ୍ତି—ପଡ଼ିଶା ଘରୁ ପିଲାଟିଏ ଆଣି କାମରେ ଲଗାଇଛନ୍ତି । ପ୍ରତିଦିନ ୩୦୦ ଟଙ୍କା ସୁନ୍ଦର ଲୁଗା ଚୁଣି ନାନା ରଙ୍ଗର ବୁଣି ଦେଉଛନ୍ତି । ପଡ଼ିଶା ଘର ପିଲାଟି ତାଙ୍କରି ଘରେ ଖାଏ, ଭଲ ଲୁଗାଧଟା ପାଏ ଓ କିଛି ମଜୁରି ନେଇ ଚାଲି ଯାଏ ।

ଯୁଦ୍ଧ ପୂର୍ବରୁ ଜାପାନର ଗୋଟିଏ 'ଘର ଲୁଗା କାରଖାନା' ରେ କିଭଳି କାମ ହେଉଥିଲା ଗନ୍ଥର ଷ୍ଟେନ ତା'ର ଏହିଭଳି ବର୍ଣ୍ଣନା କରିଛନ୍ତି । ଛୋଟିଆ ମନ୍ଦିରଟିଏ । ଗୋଟିଏ ଘର ଗୁରିପଟେ ଧାନ ବିଲ—ଯାହା ଭିତରେ ଫଳ ବଗିଚ୍ଛ । ଘର ଭିତରେ ୬ଟି ଲୁହା ତନ୍ତ ବିଜୁଳିରେ ଚାଲୁଛି । ଛ'ଟିଯାକ ତନ୍ତକୁ ଚଳାଉଛନ୍ତି ଘରର ମାଲିକ, ତା' ସ୍ତ୍ରୀ ଓ ପଡ଼ିଶା ଘରର ପିଲାଟିଏ । ତିନିଜଣ ଯାକ ଖୁବ୍ କାର୍ଯ୍ୟବ୍ୟସ୍ତ । ସେମାନେ ସକାଳ ଛ'ଟା ବେଳେ କାମ ଆରମ୍ଭ କରି ଦିଅନ୍ତି । ଦିନ ଭିତରେ ତିନିଥର ବିଶ୍ରାମ ନିଅନ୍ତି ଦୁଇଥର ପନ୍ଦର ମିନିଟ୍ ଲେଖାଁ ଓ ଥରେ ଅଧଘଣ୍ଟାକ ପାଇଁ । ସନ୍ଧ୍ୟା ଛ'ଟା ବେଳେ ମେସିନ୍

ବନ୍ଦ ହୋଇଯାଏ । ତା’ ପରେ ପରଦିନର କାମପାଇଁ ଆୟୋଜନ ଚାଲେ । ସ୍ତ୍ରୀ ସେଷେଇ ଘରକୁ ଚାଲି ଯାଏ ପୁରୁଷ ଚିଠି ଲେଖାଲେଖି କରେ ବା କିଛି ପଢ଼େ । ମାସକରେ ଦୁଇଦିନ ସମସ୍ତଙ୍କର ପୂରା ଛୁଟି । ସେମାନେ ଯେଉଁ ଘରେ ଶୁଅନ୍ତି ଓ ତନ୍ତଘର ଭିତରେ କବାଟ ନାହିଁ । ସ୍ଫେଟିଆ ଟେବୁଲ୍ ଟିଏ ପଡ଼ିଛି । ଗଦି ଗୋଟିଏ ପୋ’ଡି । କାଠ କୋଇଲା ଜାଳ ନିଆଁ ପୁହିଁବା ପାଇଁ ଲୁହାର ଗୋଟାଏ ସଲମ ଥୁଆ ହୋଇଛି । ତନ୍ତ ଗୋଟାକ ବେଶି ଦାମ୍ ନୁହେଁ । ସେକେଣ୍ଡହ୍ୟାଣ୍ଡ ତନ୍ତ ୭୦ ଟଙ୍କାକୁ ମିଳିଯାଏ । ଯେଉଁଠି ପାରି ସେଠି ବିକି ହେଉଛି ।

## ଜାପାନ କନ୍ୟାଙ୍କୁ ପ୍ରଣାମ

ଚମନ୍‌ଲାଲଜୀ ଜାପାନର କୁଟୀର ଶିଳ୍ପ ଦେଖି ମୁଗ୍ଧ ହୋଇ ଯାଇଛନ୍ତି । ମହିଳାମାନଙ୍କର କାରିଗରୀ ହାତ ଓ କଳାଜ୍ଞାନର ପ୍ରଶଂସା କରିବାକୁ ସେ ଭାଷା ପାଇ ନାହାନ୍ତି ବୋଲି କହିଲେ ଚଳେ । ସେ ଲେଖିଛନ୍ତି, ଜାପାନୀ କନ୍ୟାମାନେ କୁଟୀର ଶିଳ୍ପର ଆତ୍ମା । ସେମାନଙ୍କୁ ମୁଁ ପ୍ରଣାମ କରୁଛି··· ସେମାନଙ୍କ ଆଗରେ ମୋର ମଥା ନତ କରୁଛି । ସେମାନଙ୍କର ଖଟିବାର ଓ କାମ କରିବାର ଅଦ୍ଭୁତ ଶକ୍ତି ରହିଛି । ସେମାନଙ୍କ ରକ୍ତର ପ୍ରତି ବିନ୍ଦୁରେ କଳାଜ୍ଞାନ ଓ ସୌନ୍ଦର୍ଯ୍ୟ ଜ୍ଞାନ ଭରି ରହିଛି । ସେମାନଙ୍କ ଆଙ୍ଗୁଠି ଟିପରେ କାରିଗରୀ ବିଦ୍ୟା ପୂରି ରହିଛି । ଯେଉଁ ଦେଶ ଏଭଳି କନ୍ୟା ଜନ୍ମ କରିଛି ସେ ଦେଶ ଯେ କୁଟୀର ଶିଳ୍ପ ବିଦ୍ୟାରେ ପୃଥିବୀରେ ଶ୍ରେଷ୍ଠ ସ୍ଥାନ ଅଧିକାର କରି ବସିଛି ଏଥିରେ ଆଶ୍ଚର୍ଯ୍ୟର କଥା କିଛି ନାହିଁ ।

## ମେସିନ୍‌କୁ ଗାଁ’କୁ ନିଅ—
## ସହରରେ କାହିଁକି ରଖିଛ ?

ଚମନ୍‌ଲାଲଜୀଙ୍କ ଭାଷାରେ କହିବାକୁ ଗଲେ ଜାପାନ ସରକାର ଯାହା ସୁଚିନ୍ତିତ ଯୋଜନା କରି ମେସିନ୍ ଓ ବିଜୁଳି ଶକ୍ତିକୁ ନେଇ

ଜାପାନର ପ୍ରତି ଘରେ ପହଞ୍ଚାଇ ଦେଇ ନ ଥା'ନ୍ତେ ମହିଳା ମାନଙ୍କର କଳା କୁଶଳ ହାତ ଜାପାନରେ ଏ ଚମକ ସୃଷ୍ଟି କରି ପାରି ନ ଥା'ନ୍ତା । ଆମେ ଯଦି ପ୍ରକୃତରେ କୁଟୀର ଶିଳ୍ପର ପ୍ରସାର ଚାହୁଁ ତେବେ ଗାଁ-ବାଲାଙ୍କୁ ସହରର ମେସିନ୍ ପାଖକୁ ଟାଣି ନ ନେଇ ସହରର ମେସିନ୍‌କୁ ଗାଁ ବାଲାଙ୍କ ପାଖରେ ନେଇ ପହଞ୍ଚାଇ ଦେବାକୁ ହେବ । ସେ ତା'ର ଘରଦ୍ୱାର ପିଲା କବିଲା ଛାଡ଼ି ସହରରେ ମେସିନ୍ ଭଳି କାହିଁକି କାମ କରିବାକୁ ବାଧ୍ୟ ହେବ ? ଘରେ ଗୋଟେ ମେସିନ୍ ଚଳାଇଲେ ମଧ୍ୟ ସେ ମେସିନ୍ ସଙ୍ଗରେ ମେସିନ ପାଲଟିବ ନାହିଁ । ଘରେ ତା'ଟି ଜୀବନ ସ୍ଫୂର୍ତ୍ତି ଭରି ରହିଥିବ । ଆମେ ତା' କରିପାରିଲେ ଗାଁ ଗହଳରୁ ଦାରିଦ୍ର୍ୟକୁ ଧକ୍କା ଦେଇ ଦୂର କରି ପାରିବା ।





ବାଉଁଶର ଆରାମ ଚଉକି



ବାଉଁଶରୁ ବ୍ଡଡ଼ ଛଳପ

# ସଫଳତାର ରହସ୍ୟ ଭେଦ

କୁଟୀର ଶିଳ୍ପ ଜରିଆରେ ଜାପାନରେ ଯେଉଁ ଅଦ୍ଭୁତ କାର୍ଯ୍ୟ ହେଉଛି ସେ ବିଷୟରେ ଆମେ ଏପର୍ଯ୍ୟନ୍ତ ଯେତିକ ଜାଣିଲେଣି ତା' ଠାରୁ ଢେର ବେଶି ଜାଣିବାର ଅଛି ଓ ପରବର୍ତ୍ତୀ ଅଧ୍ୟାୟ ମାନଙ୍କରେ ଜାଣିବା । ଦ୍ୱିତୀୟ ମହାଯୁଦ୍ଧ ପୂର୍ବରୁ କଲିକତା ବଜାରରେ ସାଇକେଲ ଗୋଟାକ ଯେତେବେଳେ ଅଠର ଟଙ୍କାରେ ବିକ୍ରି ହେଲା ସେତେବେଳେ ଭାରତର ସମସ୍ତେ ଆଶ୍ଚର୍ଯ୍ୟ ହୋଇ ଗଲେ । ଜାପାନରେ ସାଇକେଲ ପେ ସ୍କୁଲ ପିଲାମାନେ କୁଟୀରଶିଳ୍ପ ଭାବରେ ତିଆରି କରନ୍ତି ଓ ସାଇକେଲ ଗୋଟାକ ଆଠ ଟଙ୍କାରେ ବିକ୍ରି କରି ଦିଅନ୍ତି; ଏହା ବିଶ୍ୱାସ କରିବାକୁ ମନ ହେଉ ନ ଥିଲେ ମଧ୍ୟ ପ୍ରକୃତ ସତ୍ୟ ।

ମନରେ ସ୍ୱତଃ ପ୍ରଶ୍ନ ଉଠୁଛି ଜାପାନରେ ଏ ସବୁ ସମ୍ଭବ ହେଉଛି କପରି ! ଜାପାନର ଏ ବିରାଟ ସଫଳତାର ପ୍ରକୃତ ରହସ୍ୟ କେଉଁଠି ? ଜାପାନରେ ତୁଳା ନାହିଁ । ଭାରତରୁ, ଇଜିପ୍ଟରୁ ତୁଳା ନେଉଛି ଓ ଲୁଗା ବୁଣି ସେଇ ଭାରତ ସେଇ ଇଜିପ୍ଟରେ ଆଣି ଶସ୍ତାରେ ବିକି ଦେଉଛି । ଏହାକୁ କମିଆ କହିବ ନାହିଁ ତ ଆଉ କହିବ କ'ଣ ? କେବଳ ୭୫ ବର୍ଷ ତଳେ ଜାପାନ ନିଜ ଦେଶକୁ ନୂଆ ଗୁଣରେ ଗଢ଼ିବାକୁ ଆରମ୍ଭ କଲା । ଏତିକ ଅଳ୍ପ ସମୟ ଭିତରେ ଏତେ ବଡ଼ ଶିଳ୍ପ ପ୍ରଧାନ ଦେଶ ହେବା ସମ୍ଭବ ହେଲା କପରି ? ଶ୍ରୀ ଚମନ୍‌ଲାଲଙ୍କ ଭାଷାରେ କହିବାକୁ ଗଲେ ଜାପାନୀ ମାନଙ୍କର

ଯୋଗ୍ୟତା ଓ ପ୍ରକୃତିର ଆଶୀର୍ବାଦ—ଏହି ଦୁଇଟିର ସମିଶ୍ରଣରେହିଁ ଜାପାନର ଉନ୍ନତି ହୋଇଛି । ତାଙ୍କ ମତରେ ଜାପାନର ଜଳବାୟୁ ଓ ପ୍ରାକୃତିକ ସୌନ୍ଦର୍ଯ୍ୟ ଦିଗରୁ ବିଗ୍ଭର କଲେ ସେ ଦେଶଟି "ଭଗବାନଙ୍କର ଗୋଟିଏ ପ୍ରିୟ ସନ୍ତାନ" ବୋଲି ସ୍ୱୀକାର କରିବାକୁ ହେବ । ଆମେରିକାକୁ ଭଗବାନ ଅସରନ୍ତି ପ୍ରାକୃତିକ ସମ୍ପଦ ଦେଇ-ଥିଲେ ମଧ୍ୟ ଜାପାନକୁ କମ୍ ଦାନ କରି ନାହାନ୍ତି । ଭଗବାନଙ୍କ ବିରୁଦ୍ଧରେ ଅଭିଯୋଗ କରି ଚମନ୍‌ଲାଲଜୀ କହିଛନ୍ତି—"ଭଗବାନ ଭାରତ ପ୍ରତି କେଡ଼େ ନିର୍ଦ୍ଦୟ ଦେଖିଲ—ବର୍ଷକର ଛ' ମାସ ଗରମ ଦିନ କହିଲେ ଚଳେ । ଗୋଟାଏ ଗୋଟାଏ ଅଞ୍ଚଳରେ ୭ ମାସ ପର୍ଯ୍ୟନ୍ତ ଖରାର ପ୍ରକୋପ ଥାଏ । ଜାପାନ ସହିତ ଭାରତର ଜଳବାୟୁର ତୁଳନା କଲେ ବେଶ୍ ବୁଝି ପାରିବ ଭାରତ ଓ ଜାପାନ ଉଭୟକୁ ଭଗବାନ ତିଆରି କରି ଥିଲେ ମଧ୍ୟ ପକ୍ଷପାତ କରି ଜାପାନକୁ ଭଲ ଅର୍ଥାତ୍ କାମ କରିବା ଉପଯୋଗୀ ଜଳବାୟୁ ଦେଇଛନ୍ତି—ଭାରତକୁ ଦେଇ ନାହାନ୍ତି । ପ୍ରକୃତରେ ଦେଖିବାକୁ ଗଲେ ସମଗ୍ର ଜାପାନଟା ଗୋଟାଏ ସୁନ୍ଦର ବଗିଚା । ଜନଗହଳି ସହର ଭିତରୁ ମଟରରେ ଘଣ୍ଟାକର ବାଟ ଗଲେ ଏଭଳି ସୁନ୍ଦର ପ୍ରାକୃତିକ ଦୃଶ୍ୟ ମିଳିବ ଯେ ମନେ ହେବ ସତେ ଯେପରି କି ପ୍ରକୃତି ସେଇଠିହିଁ ଘର କରି ରହିଛି । ଆମେ ଭାରତରେ କାଶ୍ମୀରକୁ ନନ୍ଦନ କାନନ ବୋଲି କହୁ । ସେଭଳି କହିବାର ହକ୍ ଆମର ଅଛି କିନ୍ତୁ ଆମକୁ ମାନିବାକୁ ପଡ଼ିବ ଯେ ସମଗ୍ର ଜାପାନଟା ଗୋଟାଏ ବଡ଼ କାଶ୍ମୀର । କାଶ୍ମୀର ଭଳି ପ୍ରାକୃତିକ ସୌନ୍ଦର୍ଯ୍ୟ ଭରା କୌଣସି ଏକ ଅଞ୍ଚଳକୁ ଯାଇ ଆନନ୍ଦ ଉପଭୋଗ କରିବାକୁ ଇଚ୍ଛା କଲେ ଭାରତର ଅନେକ ଅଞ୍ଚଳର ଲୋକଙ୍କୁ ବହୁତ ଟଙ୍କା ଖର୍ଚ୍ଚ କରିବାକୁ ପଡ଼େ, କିନ୍ତୁ ଜାପାନରେ ପାଞ୍ଚ ଦଶଟଙ୍କା ଖର୍ଚ୍ଚରେ ଗୋଟାଏ ଗୋଟାଏ ସୌନ୍ଦର୍ଯ୍ୟ ଭରା ସ୍ଥାନରେ ଯାଇ ପହଞ୍ଚି ହେବ ।

ସେ ଦେଶରେ ବିରାଟ ସମତଳ ଭୂମି ନାହିଁ—ମୋଟଉପରେ ଦେଶଟା ପାହାଡ଼ିଆ । ଯଥେଷ୍ଟ ବର୍ଷା ହେଉଥିବାରୁ ଜାପାନରେ

ଜଙ୍ଗଲ ଭରି ରହିଛି । ଦେଶର ପ୍ରାୟ ପ୍ରତ୍ୟେକ ଆଡ଼କୁ ବହୁ ସଂଖ୍ୟକ ନଈ ବହି ଯାଇଛି । ଫଳରେ ଜଳ ସେଚନର ସୁବିଧା ହୁଏ ଓ ଜଳ ପଥରେ ମାଲ ବହି ନେବା ସହଜ ହେବା ସଙ୍ଗେ ସଙ୍ଗେ ଶସ୍ତା ମଧ୍ୟ ହୋଇଥାଏ । ଏ କଥା ସତ ଯେ ଜାପାନରେ ବହୁ ଅଞ୍ଚଳରେ ଭୂମିକମ୍ପ ହୁଏ । କିନ୍ତୁ ଭୂମିକମ୍ପ ଜାପାନର ପ୍ରାକୃତିକ ସୌନ୍ଦର୍ଯ୍ୟକୁ କମାଇ ନ ଦେଇ ବରଂ ବଢ଼ାଇ ଦେଉଛି । ଜାପାନର ଗୁରିଆଡ଼େ ସମୁଦ୍ର । ତା'ର ଉପକୂଳ ଭିତରକୁ ସମୁଦ୍ର ସ୍ଥାନେ ସ୍ଥାନେ ପଶି ଆସି କରତ ଦାନ୍ତ ଭଳି କରି ଦେଇଛି । ବହୁସଂଖ୍ୟକ ଜଳ ପ୍ରପାତ—ଦ୍ରୁତଗାମୀ ନଦୀ, ଘୋର ଜଙ୍ଗଲ, ବହୁସଂଖ୍ୟକ ପାହାଡ଼, ଚମତ୍କାର ଉପତ୍ୟକା···ପ୍ରତ୍ୟେକଟିର ପ୍ରଭାବ ଜାପାନୀମାନଙ୍କର ଗୁଲି ଚଳନ ଢଙ୍ଗରଙ୍ଗ ଉପରେ ପଡ଼ିଛି ।

ପୃଥିବୀ ମାନଚିତ୍ର ଆଗରେ ପକାଇ ଦେଖି ଦେଲେ ଜଣା ପଡ଼ିଯିବ, ଜାପାନ ସମଶୀତୋଷ୍ଣ ଅଞ୍ଚଳରେ ରହିଛି । ସେଠାରେ ଖରାର ପ୍ରଚଣ୍ଡତା ନାହିଁ କି ଶୀତର ପ୍ରାଦୁର୍ଭାବ ନାହିଁ । ଜଳବାୟୁ ଫଳରେ ଗୋଟାଏ ଗୋଟାଏ ଜାତି ପରିଶ୍ରମୀ ହୋଇ ଉଠନ୍ତି ବା ଅଳସୁଆ ହୋଇ ପଡ଼ନ୍ତି । ଭାରତରେ ପ୍ରଚଣ୍ଡ ଗରମ ଆମର ଅନେକ ଶକ୍ତି ଆମଠାରୁ କାଢ଼ି ନେଉଛି । ଗରମରେ ଆମେ ଛଟ୍‌ପଟ୍ ହେଲାବେଳେ କାମ କରିବାକୁ ମନ ହେଉନାହିଁ । ଜାପାନୀ ଲୋକ-ଙ୍କର ସୌଭାଗ୍ୟ ଯେ ସେମାନେ ସେ ଦେଶର ଜଳବାୟୁରେ ଆମ ତୁଳନାରେ ବହୁତ ବେଶି ସମୟ ଧରି କାମ କରି ପାରୁଛନ୍ତି ଓ କାମ କଲାବେଳେ ମନ ଖୁସି ରଖି ପାରୁଛନ୍ତି ।

## ଜାପାନୀ କାରିଗର—ଶ୍ରମିକ

ପୃଥିବୀର ଅନ୍ୟ ଅଞ୍ଚଳ ବିଷୟରେ ଆମେ ଇଂରେଜମାନଙ୍କଠାରୁ ଶୁଣୁଥିଲୁ ଅନ୍ୟ ଦେଶରେ କଣ ହେଉଛି । ଇଂରେଜ ମାନଙ୍କ ଆଖିରେ ଦେଖିବା ଆମର ଅଭ୍ୟାସ ହୋଇ ଯାଇଥିଲା । ସେମାନେ ଆମକୁ ବରାବର କହନ୍ତି ଯେ ଜାପାନର ଶ୍ରମିକକୁ କାମରେ ଖଟାଇ

ଖଟାଇ ମାରି ଦେଇ ଜାପାନୀ ମାଲ୍ ପୃଥିବୀ ବଜାରରେ ଆଣି ଶସ୍ତାରେ ବିକା ଯାଉଛି । ଜାପାନୀମାନେ ଭଲ କାରିଗର ନୁହାନ୍ତି; ସେମାନେ କେବଳ ନକଲ କରି ଜାଣନ୍ତି ବୋଲି ଆମକୁ ବରାବର କୁହା ଯାଇଥାଏ କିନ୍ତୁ ପ୍ରକୃତରେ ତାହା ନୁହେଁ । ଜାପାନୀମାନେ ଅତି ଉଚ୍ଚ ଦରର କାରିଗର । ଜାପାନୀ ଶ୍ରମିକ ଖୁବ୍ ଦକ୍ଷ । ସେମାନଙ୍କର ଦକ୍ଷତା ବଢ଼ାଇବା ପାଇଁ ସେମାନେ ସବୁବେଳେ ଚେଷ୍ଟା କରୁଥା'ନ୍ତି । ଏଇ କଥାଟି ସ୍ୱୀକାର ନ କରି ଆମେ ଭ୍ରମରେ ପଡ଼ିଥାଉଁ ।

ଜାପାନୀମାନେ କପି ବା ନକଲ କରିବାରେ ଧୁରନ୍ଧର ବୋଲି ଯେଉଁ ଅଭିଯୋଗ ହୁଏ ତା'ଭିତରେ ଯଦି କିଛି ସତ୍ୟତା ଅଛି ତାହା ହେଉଛି···ଅନ୍ୟମାନଙ୍କଠାରୁ ଶିଖି ନିଜର ଜ୍ଞାନ ଓ ଦକ୍ଷତା ବଢ଼ାଇବାରେ ସେମାନେ ଧୁରନ୍ଧର । ସେମାନଙ୍କ କାରିଗରୀ ହାତ ଓ ବୁଦ୍ଧିର ପ୍ରଶଂସା ପୃଥିବୀର ସବୁ ଦେଶ ସ୍ୱୀକାର କଲେଣି ।

ଦୁଇଟି ମାତ୍ର ଉଦାହରଣରୁ ଜଣା ପଡ଼ିବ ଅଳ୍ପ ସମୟରେ ବେଶି କାମ କରିବା ପାଇଁ ବା ବେଶି କାମ କରିବାର ଉପାୟ ବାହାର କରିବା ପାଇଁ ସେମାନେ ସବୁବେଳେ ଚେଷ୍ଟା କରୁଥାନ୍ତି । ସେ ଚେଷ୍ଟାର ଅନ୍ତ ନାହିଁ ।

ଜାପାନରେ ଯେତେ ରେଲ୍ ଇଂଜିନ୍ ଚାଲେ, ସବୁ ଗୁଡ଼ିକୁ ପ୍ରତି ତିନି ବର୍ଷରେ ଥରେ ଖୋଲି ଭଲ ଭାବରେ ଦେଖି ନେଇ, ମରାମତି କରି ପୁଣି ଖଞ୍ଜି ଚାଲୁ ଅବସ୍ଥାରେ ରଖି ଦିଆଯାଏ । ୩୦ ବର୍ଷ ତଳେ ଗୋଟାଏ ଇଂଜିନକୁ ଏହି ଭଳି କରିବା ପାଇଁ ପୂରା ୩୦ ଦିନ ଲାଗୁଥିଲା, କିନ୍ତୁ ଜାପାନୀ କାରିଗର ଓ ଶ୍ରମିକମାନେ ସେମାନଙ୍କର ଦକ୍ଷତା ଏ ଭଳି ବଢ଼ାଇଲେ ଯେ ୧୫ ବର୍ଷ ଭିତରେ ସେଇ କାମ କରିବା ପାଇଁ କେବଳ ୫ଦିନ ସମୟ ଲାଗିଲା । ତା'ବୋଲି ଯେ ବେଶି ଲୋକ ଲାଗି ଅଳ୍ପ ଦିନରେ କରି ଦେଲେ ତାହା ନୁହେଁ; ସେତିକି ଲୋକ ଲାଗି ୫ ଦିନରେ କରି ଦେଲେ । ଆହୁରି ଆଶ୍ଚର୍ଯ୍ୟର କଥା ଯେ ଯେଉଁଠି ୯୦୦୦ଟି ମୂଲ ଲାଗୁ ଥିଲା ସେଠି ୪୦୦୦ଟି ମୂଲ ଲାଗିଲା । ଦକ୍ଷ ଆମେରିକାନ୍

କାରିଗର ସେତକ କାମକୁ ୧୪ ଦିନରୁ କମ୍‌ରେ କରିପାରୁ ନାହାନ୍ତି । ଇଂଲଣ୍ଡ ଓ ଜର୍ମାନରେ ୪ ସପ୍ତାହ ନେଉଛନ୍ତି । ଜାପାନୀ କାରିଗର ନିଏ ୫ଦିନ ।

ଆମ ଭାରତରୁ ସମୟେ ସମୟେ ବଡ଼ ବଡ଼ ସରକାରୀ କର୍ମଚାରୀ-ମାନେ ଜାପାନଠାରୁ ଆମର କଣ ଶିଖିବାର ଅଛି ସେ ବିଷୟରେ ଅନୁସନ୍ଧାନ କରନ୍ତି । ସେଇ ଭଳି ଜଣେ ଅଫିସରଙ୍କୁ ଶ୍ରୀ ଚମନ୍‌ଲାଲ ଜାପାନରେ ଭେଟିଥିଲେ । ଚମନ୍‌ଲାଲ ଯେଉଁ ଦିନ ଯାଇ ଜାପାନରେ ଓହ୍ଲାଇଲେ ସେଇ ଦିନ ସେ ଉଚ୍ଚ ପଦସ୍ଥ ଅଫିସର ତାଙ୍କୁ ଦେଖିଲା ମାତ୍ରେ କହିଲେ, " ଜାପାନୀ ଗୁଡ଼ାକ କେବଳ କପି କରି ଜାଣନ୍ତି, ଆମର ସେମାନଙ୍କଠାରୁ କିଛି ଶିଖିବାର ନାହିଁ ।" ତାଙ୍କର ସେଇ କଥା ଉଦ୍ଧାର କରି ଚମନ୍‌ଲାଲଜୀ ଲେଖିଛନ୍ତି— ଭାରତୀୟ ଅଫିସର ସିନା କହିଲେ ଯେ ତାଙ୍କଠାରୁ ଆମର କିଛି ଶିଖିବାର ନାହିଁ, ସୋଭିଏଟ ରୁଷ କିନ୍ତୁ ସେ କଥା ବିଚାରିଲା ନାହିଁ । ରୁଷ ସରକାର ଦଳେ ରେଲଓଏ ଇଞ୍ଜିନିୟରଙ୍କୁ ଜାପାନକୁ ପଠାଇଥିଲେ । ସେମାନେ ଜାପାନର ଓମିୟା କାରଖାନାରେ କିଛି ଦିନ ରହିଲା ପରେ ନିଜ ଦେଶକୁ ଫେରିଗଲେ । ଜାପାନୀମାନେ ରେଲ୍ ଇଂଜିନ୍‌କୁ ଉଖାଳିବାରେ ବା ଓଭରହଲ କରିବାରେ ଯେଉଁ ପଦ୍ଧତି ଅନୁସରଣ କରୁଛନ୍ତି, ରୁଷ୍ ଇଂଜିନିୟରମାନେ ତାକୁ କପି କରି ନେଇ ନିଜ ଦେଶରେ ପ୍ରୟୋଗ କଲେ । ପୂର୍ବେ ସେହି କାମ କରିବା ପାଇଁ ୯୫ ଦିନ ଲାଗୁଥିଲା । ଋଷିଆନ୍ ଇଞ୍ଜିନିୟରମାନେ ତାକୁ ଅଧା କମାଇ ଦେଲେ । ଅଧାରୁ କମ୍ ସମୟରେ ଯେତେ ଚେଷ୍ଟା କଲେ ମଧ କରି ପାରିଲେ ନାହିଁ । ରୁଷ୍‌ର ଇଚ୍ଛା ଯେ ଜାପାନୀମାନେ ଯେତକ ଦିନରେ କରୁଛନ୍ତି ରୁଷ୍‌ରେ ସେତକ ଦିନରେ ସେ କାମ ହେଉ । ରୁଷ୍ ସରକାର ଜାପାନ ସରକାରଙ୍କୁ ଅନୁରୋଧ କଲେ ଓମିୟା କାରଖାନାର ଇଂଜିନିୟର ଇନ୍-ଚିଫ୍‌ଙ୍କୁ କିଛି ଦିନ ପାଇଁ ରୁଷ୍‌କୁ ପଠାଇବା ପାଇଁ । ଜାପାନ ସରକାର ସେ ଅନୁରୋଧ ରକ୍ଷାକରି ଚିଫ୍ ଇଂଜିନିୟର ମିଷ୍ଟର କାଟୋଙ୍କୁ ରୁଷକୁ ପଠାଇଲେ । ତାଙ୍କୁ ସାହାଯ୍ୟ କରିବା ପାଇଁ ଆଉ କେତେଜଣ ଆସିଷ୍ଟାଣ୍ଟ ଇଂଜିନିୟର ମଧ ଯାଇ ଥିଲେ । ଚିଫ୍ ଇଂଜିନିୟର କାଟୋଙ୍କ

ତନ୍ତ୍ରାବଧାନରେ କାମ ହୋଇ ଇଂଜିନ ଓଭର-ହାଲ ହେବାକୁ କେବଳ ୭ ଦିନ ଲାଗିଲା । ଜାପାନୀମାନେ ରୁଷ୍ ଛାଡ଼ିଲା ପରେ, ରୁଷ୍ କାରିଗର-ମାନେ ସେହି କାମଟିକୁ ୭ ଦିନରେ କରି ପାରୁ ନାହାନ୍ତି ୧୧ ଦିନରେ କରୁଛନ୍ତି । ପୂର୍ବେ ଯେଉଁଭଳି ୪୫ ଦିନ ଲାଗୁଥିଲା ଆଉ ସେଭଳି ଲାଗୁନାହିଁ ।

ଜାପାନୀ ଇଂଜିନିୟର ଓ କାରିଗରମାନେ ନିଜ ଦକ୍ଷତା ବିଷୟରେ ଯଥାର୍ଥରେ କି ଭଳି ଗର୍ବ ଅନୁଭବ କରନ୍ତି ତାହା ଜଣେ ଜାପାନୀ ଶିଳ୍ପପତିଙ୍କ ମୁହଁରୁ ଶୁଣିବା । ମିଷ୍ଟର ଫୁଜିହାରା ଜାପାନର ଜଣେ ଶିଳ୍ପପତି । ସେ ନିଜର ଅଭିଜ୍ଞତାରୁ କହିଲେ, "ମୋ କଂପାନୀ ଜାପାନରେ ସବୁଠାରୁ ବଡ଼ କାଗଜ ତିଆରି ସଂସ୍ଥା । ୧୦ବର୍ଷ ତଳେ ଆମ କଂପାନୀ ଇଂଲଣ୍ଡକୁ ଗୋଟିଏ କାଗଜ ତିଆରି ମେସିନ୍ ପାଇଁ ଅର୍ଡ଼ର ଦେଲା । ସେ ମେସିନ୍‌ରେ ମିନିଟ୍‌କୁ ୧୦୦୦ ଫୁଟ୍ କାଗଜ ତିଆରି ହୋଇ ଯିବ । ସେ ମେସିନକୁ ନିର୍ଦ୍ଦୋଷ ଭାବରେ ବସାଇବା ପାଇଁ ଅତି ଉଚ୍ଚ ଦରର ଇଂଜିନିୟରିଂ ଜ୍ଞାନ ଓ ଦକ୍ଷତା ଲୋଡ଼ା ।

ଇଂଲଣ୍ଡର କଂପାନୀ ଜୋର ଦେଇ କହିଲେ ଯେ ସେମାନେ ମେସିନ୍ ସାଙ୍ଗରେ ମେସିନ୍ ବସାଇବା ଇଂଜିନିୟର ପଠାଇବେ । ବସାଇବାରେ ଟିକିଏ କେଉଁଠି ଭୁଲ୍ ରହିଗଲେ ମେସିନ୍ କାମ ଦେବ ନାହିଁ । ଜାପାନୀ ଇଂଜିନିୟର ସେ କାମ କରିପାରିବେ ବୋଲି ଇଂଲଣ୍ଡର ମେସିନ୍ ତିଆରିକଳବାଲାଙ୍କର ବିଶ୍ୱାସ ହେଲା ନାହିଁ । ସେମାନେ ଆହୁରି ମଧ୍ୟ ମୋ ପାଖକୁ ଲେଖିଲେ ଯେ ମେସିନ୍ ଦାମ୍ ବାଦ ଇଂଜିନିୟରମାନଙ୍କର ଦରମା ଓ ଗସ୍ତ ଖର୍ଚ୍ଚ ଦେବାକୁ ପଡ଼ିବ । ମୁଁ ତାଙ୍କର ସର୍ତ୍ତ ଗ୍ରହଣ କରିଦିବାକୁ ଯାଉଥିଲି । ମୋ ମ୍ୟାନେଜରଙ୍କୁ ମଧ୍ୟ ମୁଁ ଜଣାଇ ଦେଲି ମେସିନ୍ ଆସିଲେ କେଉଁଠି ବସିବ ? କିନ୍ତୁ ମୋ ମ୍ୟାନେଜର ମୋତେ ଜଣାଇଲେ ଯେ ତାଙ୍କ ଅଧୀନରେ ଥିବା ଜାପାନୀ ଇଂଜିନିୟରମାନେ ଦୃଢ଼ତାର ସହିତ କହୁଛନ୍ତି ଯେ ସେମାନେ ସେ ମେସିନକୁ ବସାଇ ଦେବେ । ମୋ ମ୍ୟାନେଜର ମତେ ଆହୁରି

ମଧ୍ୟ କହିଲେ ଯେ ଏଇଠା ହେଉଛି ଜାପାନୀ ଇଂଜିନିୟରମାନଙ୍କର ସମ୍ମାନ ବା ଇଜ୍ଜତ୍‌ର ପ୍ରଶ୍ନ । ମୁଁ ସେହି କଥା ଇଂଲିସ କଂପାନୀକୁ ଜଣାଇ ଦେଲି, କିନ୍ତୁ ସେମାନେ ଜାପାନୀ ଇଂଜିନିୟରଙ୍କ ହାତରେ ଏତେ ବଡ଼ ଦାୟିତ୍ୱର କାମ ଛାଡ଼ି ଦେବାକୁ ରାଜି ହେଲେ ନାହିଁ । ଆମେ ଜିଦ୍ ଧରିଲୁ ଯେ ମେସିନ୍ ବସା ଇଂରେଜ ଆମର ମୋଟେ ଦରକାର ନାହାନ୍ତି । ଶେଷକୁ ସେମାନେ ରାଜି ହେଲେ ଓ ଆମ ବରାଦ ମୁତାବକ ମେସିନ୍ ପଠାଇ ଦେଲେ । ଜାପାନୀ ଇଂଜିନିୟରମାନେ କାଗଜ ତିଆରି ମେସିନ୍‌ଟିକୁ ଠିକ୍ ଭାବରେ ବସାଇ ଦେଲେ ।

"ମେସିନ୍ ବସାଇବା କାମ ଶେଷ ହେବାର ଠିକ୍ ପୂର୍ବରୁ ଜଣେ ଇଂରେଜ ଇଞ୍ଜିନିୟର ଓ ତାଙ୍କ ଆସିଷ୍ଟାଣ୍ଟ୍ ଟୋକିଓରେ ମୋ ଅଫିସରେ ଆସି ମୋତେ ଦେଖାକଲେ । ସେମାନେ ଆସିବେ ବୋଲି ମୁଁ ମୋଟେ ଆଶା କରି ନ ଥିଲି । ସେ ଇଞ୍ଜିନିୟର ମୋ ଆଗରେ ସଫା ଫିଟାଇ କହିଲେ ଯେ ଇଂଲଣ୍ଡରେ ସେମାନଙ୍କର ଆଶଙ୍କା ହେଲା ଯେ ଜାପାନୀ ଇଞ୍ଜିନିୟରମାନେ ହୁଏତ ଠିକ୍ ଭାବରେ ମେସିନ୍‌ଟିକୁ ବସାଇ ପାରିବେ ନାହିଁ । ମିନିଟକୁ ଯଦି ୧୦୦୦ ଫୁଟ କାଗଜ ନ ବାହାରିବ ଇଂରେଜ କମ୍ପାନୀ ବଦନାମ ହୋଇଯିବ । ତେଣୁ ସେମାନେ ମୁଁ ମନା କରିବା ସତ୍ତ୍ୱେ ଜାପାନକୁ ଧାଇଁ ଆସିଛନ୍ତି ।"

"ସେମାନେ ମେସିନ୍ ବସା ସ୍ଥାନକୁ ଯାଇ ତନ୍ନତନ୍ନ କରି ସବୁ ଦେଖିଲେ ଓ ମତେ ଆସି କହିଲେ ଜାପାନୀ କାରିଗରମାନେ ନିଖୁଣ କାମ କରିଛନ୍ତି । ସେମାନଙ୍କ କାମରେ ଟିକିଏ ହେଲେ ଗଲତ ଦେଖିଲୁ ନାହିଁ । ସେ ଇଂରେଜ ଇଞ୍ଜିନିୟରଙ୍କୁ ଗୋଟିଏ ବିଦାୟୀ ଭୋଜି ଦିଆ ଗଲା । ସେ ଭୋଜିରେ ବସିଥିଲା ବେଳେ ବଡ଼ ଗମ୍ଭୀର ଦେଖା ଯାଉଥାନ୍ତି । ତାଙ୍କ ବିଦାୟୀ ଭାଷଣ ବେଳେ ସେ କହିଲେ, ଜାପାନ ଏଣିକି ଇଂଲଣ୍ଡରୁ ଆଉ କାଗଜ ତିଆରି ମେସିନ୍ କିଣିବ ନାହିଁ । ଦୀର୍ଘ ନିଶ୍ୱାସ ପକାଇ ସେ ପୁଣି କହିଲେ, ଜାପାନୀମାନେ ଏଭଳି ବୁଝିଲିଣି ଯେ ସେହିଭଳି ଚମତ୍କାର ମେସିନ୍ ଏଣିକି ଜାପାନରେ ତିଆରି କରିଦେବେ ।"

ଜେନଭାରେ ଥିବା ଆନ୍ତର୍ଜାତିକ ଶ୍ରମିକ ଅଫିସ୍‌ର ଆସିଷ୍ଟାଣ୍ଟ ଡିରେକ୍ଟର ମରେଙ୍କାଙ୍କ ଭାଷାରେ କହିବାକୁ ଗଲେ ଜାପାନୀ ଶ୍ରମିକମାନେ ଉତ୍ସାହୀ, ସୁଖୀ ଓ ଦକ୍ଷ । ଜାପାନୀ ଜାତିର ସେହିମାନେ ହେଉଛନ୍ତି ଅତି ମୂଲ୍ୟବାନ ସମ୍ପଦ ବା ମୂଳ ଧନ । ଚମନ୍‌ଲାଲଜୀ ଶ୍ରୀ ମରେଙ୍କାଙ୍କର ଏହି ଉକ୍ତି ଉଦ୍ଧାର କରି ମତ ଦେଇଛନ୍ତି ଯେ ଉପଯୁକ୍ତ ଭାବରେ ତାଲିମ ହେଲେ ଭାରତର ଶ୍ରମିକମାନେ ମଧ୍ୟ ସେଇ ଭଳି ସୁଖ୍ୟାତି ଅର୍ଜନ କରିବେ ।

## ବଡ଼ ହେବାର ଇଚ୍ଛା

ଭାରତୀୟ ଓ ଜାପାନୀ ଶ୍ରମିକମାନଙ୍କ ଭିତରେ ଗୋଟାଏ ବଡ଼ ପାର୍ଥକ୍ୟ ହେଉଛି ଜାପାନୀ ଶ୍ରମିକ ସବୁବେଳେ ଉଚ୍ଚପାହିଆକୁ ଉଠି ଉଠି ଯିବାକୁ ଇଚ୍ଛା କରୁଥାଏ ଓ ଚେଷ୍ଟା କରୁଥାଏ । ପ୍ରକୃତରେ ବଡ଼ ହେବାକୁ ତା'ର ସବୁବେଳେ ମନ । ସାଧାରଣ କାରିଗର ଫୋରମ୍ୟାନ୍ ହେବାକୁ ଚାହୁଁଥାଏ, ଫୋରମ୍ୟାନ୍ ଚେଷ୍ଟା କରୁଥାଏ ଇଂଜିନିୟର ହେବାକୁ । ତା'ର ସହଜାତ ଦକ୍ଷତା ସାଙ୍ଗକୁ ବଡ଼ ହେବାର ପ୍ରବଳ ଇଚ୍ଛା ଜାପାନୀ ଶିଳ୍ପର ଉନ୍ନତି ଘଟାଉଛି । ରେଲଓଏ ଡିପାର୍ଟମେଣ୍ଟର ଓମିୟା କାରଖାନାରେ ୨୦୦୦ ଶ୍ରମିକ କାର୍ଯ୍ୟ କରନ୍ତି । ସେମାନେ ସେଠାରେ କେବଳ ମଜୁରି ପାଇବା ପାଇଁ କାମ କରୁ ନାହାନ୍ତି । ମେସିନରେ କ' ପରିବର୍ତ୍ତନ କଲେ, କେଉଁ କାମଟା ଆଗ କଲେ, ଆଉ କ'ଣ କ'ଣ କଲେ ସୁବିଧା ହେବ ସେହି ବିଷୟରେ ସେମାନେ ପ୍ରତିଦିନ ଗବେଷଣା ଚଳାଇ ଥା'ନ୍ତି । ନୂଆ ନୂଆ ଆବିଷ୍କାର ଓ ଉନ୍ନତି ପାଇଁ ପ୍ରତି ବର୍ଷ ପଚାଶ ଷାଠିଏ ଜଣ ଶ୍ରମିକ ପୁରସ୍କାର ପାଆନ୍ତି । କାରଖାନାରେ ୯ଟି କମିଟି ଅଛି । ସେ ସବୁ କମିଟିରେ କେବଳ ଶ୍ରମିକମାନେହିଁ ଅଛନ୍ତି । ବାହାର ଲୋକ କେହି ନାହାନ୍ତି । କମିଟି ଗୁଡ଼ିକର ନାମ ଓ କାର୍ଯ୍ୟ ଜାଣିଲେ ଆମେ ବେଶ୍ ଧାରଣା କରିପାରିବା ସେଠା ଶ୍ରମିକମାନେ ପ୍ରକୃତରେ କ'ଣ କରୁଛନ୍ତି ।

୧—ପରସ୍ପର ସହଯୋଗରେ ଜ୍ଞାନ ଓ ଦକ୍ଷତା ବୃଦ୍ଧି କମିଟୀ—ଏ କମିଟୀ ଦେଖେ ଶ୍ରମିକ ମାନଙ୍କର କାମ କରିବାର ଶକ୍ତି ଓ ଦକ୍ଷତା ଯେପରି ବଢ଼ିବ ଓ ମୋଟାମୋଟି କାରଖାନାର ଉନ୍ନତି ହେବ ।

୨-ଇକନମି—ଏହାର କାମ ହେଲା କମ୍ ଜିନଷ ପତ୍ର ଓ ହାତ ହତିଆରରେ ବେଶ କାମ କପରି ହୋଇ ପାରିବ ତାହା ଦେଖିବ; କୌଣସି ଜିନଷ ଯେପରି ନଷ୍ଟ ନ ହୁଏ ବା ଅଦରକାରୀ ଭାବରେ ଖର୍ଚ୍ଚ ନ ହୋଇ ଯାଏ । କାମ ହେଲାବେଳେ ଯେଉଁ ସବୁ କାଠ ଲୁହା ଗ୍ରେଟ ଗ୍ରେଟ ହୋଇ ବାହାରି ପଡ଼ିଲା ବା ସେଠା କାମରେ ଲାଗିବା ଅଯୋଗ୍ୟ ହୋଇ ପଡ଼ିଲା ସେଗୁଡ଼ିକୁ ଅନ୍ୟ ଦରକାରୀ କାମରେ ଲଗାଇ ଦେବା ଉପାୟ ବାହାର କରାଯାଏ ।

୩—ନିରାପତ୍ତା କମିଟୀ—ଯେଉଁ ଶ୍ରମିକମାନେ ମେଶିନ୍ ଓ ହାତ ହତିଆର ନେଇ କାମ କରୁଛନ୍ତି ସେମାନଙ୍କ ଉପରକୁ ଯେପରି ବିପଦ ନ ଆସେ ବା ହାତ ଗୋଡ଼ କଟି ନ ଯାଏ ବା ଅନ୍ୟ କୌଣସି କାରଣରୁ ସେମାନଙ୍କର ଅନିଷ୍ଟ ନ ହୁଏ ତା' ଦେଖିବ ।

୪—କାମ କମିଟୀ—କାମ କରିବାର ପ୍ରଣାଳୀର ଉନ୍ନତି ଘଟାଇବା ଓ ହତିଆରର ଉନ୍ନତି କରିବା ଅର୍ଥାତ୍ କି ଧରଣର ହତିଆର ଆଣିଲେ ଶୀଘ୍ର ଓ ସହଜରେ କାମ ହୋଇ ପାରିବ ସେ ବିଷୟରେ ଗବେଷଣା କରି ଓ ପରୀକ୍ଷା କରି ଉପାୟ ବାହାର କରିବା ।

୫—ପ୍ରସେସ୍ କମିଟୀ—ଶ୍ରମିକମାନେ କେତେବେଳେ କାମକୁ ଆସିବେ, କେତେ ସମୟ କାମ କରିବେ, କାମ ଭିତରେ ବିଶ୍ରାମ କେଉଁ କେଉଁ ସମୟରେ ନେବେ ଓ କି ଢଙ୍ଗରେ କାମ କରିବେ ତାହା ସ୍ଥିର କରିବ ।

୬, ୭, ୮—ରେଳ ଇଞ୍ଜିନ୍ କମିଟୀ, ରେଳ ଡବା ଓ ଭାଗନ କମିଟୀ ଓ ଇଲେକ୍‌ଟ୍ରିକ୍ କମିଟୀ—ଏହି ତିନୋଟି କମିଟୀ ପରସ୍ପର

ସହିତ ଯୋଗସୂତ୍ର ରଖି ଇଞ୍ଜିନ ଓ ଡବା ମରାମତ କାମ ଠିକ୍ ଠିକ୍ ହେଉଛି କି ନାହିଁ ଓ ମରାମତି କାମର ଉନ୍ନତି ହେଉଛି କି ନାହିଁ ତାହା ଦେଖନ୍ତି ।

୯—ଇଞ୍ଜିନ ଉଠାଇବା ପଦ୍ଧତି କମିଟୀ—ଏହି କମିଟୀମାନଙ୍କର ନାମ ଓ କାର୍ଯ୍ୟହିଁ କହି ଦେଉଛି ସେଠା ଶ୍ରମିକ କେବଳ ପେଟ ପୋଷିବା ପାଇଁ କାମ କରୁ ନାହାନ୍ତି; କାରଖାନାରେ ସୁଯୋଗ ଅଛି । ଜଣେ ଶ୍ରମିକ ଯଦି ଇଚ୍ଛା କଲା କ୍ରମେ ଉପରକୁ ଉପରକୁ ଉଠିଯିବ ।

କାରଖାନାରେ ଯେଉଁମାନେ କାମ କରୁଛନ୍ତି ସେମାନଙ୍କ ମନ ପରିବର୍ତ୍ତନ କରିବା ଓ ସେମାନେ ଯେପରି ପ୍ରକୃତିର ସୌନ୍ଦର୍ଯ୍ୟ ଉପଭୋଗ କରିବେ ତା'ର ବ୍ୟବସ୍ଥା କରିବା କାରଖାନାର ମାଲିକ ମାନଙ୍କର ଦାୟିତ୍ୱ ଓ କର୍ତ୍ତବ୍ୟ । ପ୍ରତ୍ୟେକ କାରଖାନାର ଫୁଲ ଓ ଫଳ ବଗିଚା ରହିଛି । ନାନା ପ୍ରକାରର ଗଛ ଲଗା ଯାଇଛି । ଶ୍ରମିକମାନଙ୍କୁ ମଝିରେ ମଝିରେ ତୀର୍ଥ ସ୍ଥାନ, ରମଣୀୟ ସ୍ଥାନ, ଝରଣା, ହ୍ରଦକୁ ବୁଲାଇ ନିଆଯାଏ କାରଖାନା ଖର୍ଚ୍ଚରେ । ଜୀବନକୁ ଉପଭୋଗ କରିବା ପାଇଁ—ପ୍ରକୃତିର ସୌନ୍ଦର୍ଯ୍ୟ ଅନୁଭବ କରିବା ପାଇଁ—ଯଥେଷ୍ଟ ସୁଯୋଗ ଦିଆ ଯାଉ ଥିବାରୁ ଜାପାନୀ ଶ୍ରମିକର କାର୍ଯ୍ୟ କରିବାର ଶକ୍ତି ବଢ଼ି ଯାଉଛି । ସେ କ୍ଳାନ୍ତି ଅନୁଭବ କରୁ ନାହିଁ ବା ବିରକ୍ତ ନାହିଁ ସେ ପେଟ ପୋଷିବା ପାଇଁ ସେ ବାଧ୍ୟ ହୋଇ ଆସି କାରଖାନାରେ କାମ କରୁଛି ।

## ନିରକ୍ଷର ବିହୀନ ଦେଶ

ଜାପାନ ଯେ ଏତେ ବଡ଼ ଶିଳ୍ପ ପ୍ରଧାନ ଦେଶ ହୋଇ ପାରିଛି ତା'ର ଗୋଟାଏ ବଡ଼ କାରଣ ହେଉଛି ସେ ଦେଶରେ ନିରକ୍ଷର ନାହାନ୍ତି । ଅଳ୍ପ କେତେ ବର୍ଷ ଚେଷ୍ଟା ଫଳରେ ଯେ ସେ ଦେଶରୁ ନିରକ୍ଷରତା ଲୋପ ହୋଇଛି ଏ ଭଳି ବିଚାରିବାର କାରଣ ନାହିଁ । ଅଶୀ ବର୍ଷ ତଳେ ସମ୍ରାଟ ମେଇଜି ନିରକ୍ଷରତା ବିରୁଦ୍ଧରେ ପ୍ରବଳ

ସଂଗ୍ରାମ ଆରମ୍ଭ କରିଥିଲେ ଓ ଆଜି ଜାପାନୀ ଲୋକେ ବୁଝୁଛନ୍ତି ତାଙ୍କର କି ଭଳି ଦୂର ଦୃଷ୍ଟି ଥିଲା ।

ଅଶୀ ବର୍ଷ ତଳେ ସମ୍ରାଟ ମେଇଜି ଶପଥ ନେଇ ଏହି ଭଳି ଘୋଷଣା କଲେ—"ଏ ଦେଶରେ ନିରକ୍ଷର ପରିବାରଟିଏ ରହିଥିବା ଗୋଟିଏ ସୁଦ୍ଧା ଗ୍ରାମ ବା ନିରକ୍ଷର ଲୋକଟିଏ ଥିବା ଗୋଟିଏ ସୁଦ୍ଧା ପରିବାର ରହିବ ନାହିଁ ।"

ଜାପାନର ସମ୍ରାଟ ସେହି ଶପଥ ନେଇଥିଲେ ବୋଲି ଆଜି ସେ ଦେଶରେ ଶହକରେ ଅନେକୋଡ ଅଧେ ଲୋକ ସାକ୍ଷର ହୋଇ ପାରିଛନ୍ତି ( ଶତକରା ୯୯.୫୮ ) । ଜାପାନୀ ମାନେ ପାଠ ପଢ଼ାରେ କେତେଦୂର ଆଗେଇଛନ୍ତି ତାହା ଦେନଲାଲଜୀ ନିଜର ଅଭିଜ୍ଞତାରୁ କହିଛନ୍ତି । ତାଙ୍କରି ମୁହଁରୁ ଶୁଣାଯାଉ:—"୧୯୩୩ ସେପ୍ଟେମ୍ବର ତା୧୨ ରିଖରେ ଜାପାନରେ ମୋର ଯେଉଁ ପ୍ରଥମ ଅଭିଜ୍ଞତା ହେଲା ତାହା ମୁଁ କେବେହେଲେ ଭୁଲି ପାରିବି ନାହିଁ । ପୂର୍ବ ଦିନ ସନ୍ଧ୍ୟାବେଳେ ଜାହାଜରୁ ଓହ୍ଲାଇ ଥାଏ । ଗାନ୍ଧିଜୀଙ୍କ ଉପବାସ ବିଷୟରେ ମୁଁ ଖବର ପାଇ ନ ଥାଏ । କ୍ଳାନ୍ତ ହୋଇ ପଡ଼ିଥିଲି ବୋଲି ପୂର୍ବ ରାତିରେ ମୁଁ ବେଳାବେଳି ଶୋଇ ପଡ଼ିଥିଲି । ପରଦିନ ସକାଳ ସାଢ଼େ ପାଞ୍ଚଟା ବେଳେ ମୋ ହୋଟେଲରେ ମେହେନ୍ତରାଣୀ ମୋତେ ଦେଖି 'ନମସ୍କାର' ବୋଲି କହିଦେଇ ପ୍ରଥମ ପ୍ରଶ୍ନ ପଚାରିଲା— "ମହାତ୍ମା ଗାନ୍ଧିଙ୍କ ସ୍ୱାସ୍ଥ୍ୟ ବିଷୟରେ ଆପଣ ଶେଷ ଖବର କିଛି ଜାଣନ୍ତି କି ?" ମୁଁ ଉତ୍ତର ଦେଲି—'ଜାଣିନାହିଁ' । ମୁଁ ତ ଜାଣି ନ-ଥିଲି, କିନ୍ତୁ ଜାଣିବାକୁ ବ୍ୟଗ୍ର ହୋଇ ପଡ଼ିଥିଲି । ସେ ମୋତେ ଖବର ଦେଲା—"ଗାନ୍ଧିଜୀ ଅନଶନ ଭଙ୍ଗ କରିଛନ୍ତି ଓ ସେ ବର୍ତ୍ତମାନ ବିପଦ ପାର ହୋଇ ଗଲେଣି ।"

ମୁଁ ପଚାରିଲି—'ତୁମେ କେମିତି ଜାଣିଲ ?'

ସେ ଉତ୍ତର ଦେଲ—'କାହିଁକି ? ସକାଳେ ମୋ ଖବର-କାଗଜ ଖଣ୍ଡିକ ମୁଁ ପଢ଼ି ସାରିଛି । ସକାଳେ କାମକୁ ବାହାରିଲା ପୂର୍ବରୁ ପ୍ରତିଦିନ ଖବର କାଗଜ ପଢ଼ି ସାରିଥାଏ ।'

ଏହାଠାରୁ ଭଲ ଚମତ୍କାର କଥା ଆଉ କଣ ହୋଇପାରେ ତୋଲି ମତ ଦେଇ ଚମନଲାଲଜୀ ଲେଖିଛନ୍ତି—ଜ୍ଞାନଅର୍ଜନ ପାଇଁ ଜାପାନୀମାନଙ୍କର ଏହିଭଳି ପ୍ରବଳ ଇଚ୍ଛା ଥିବାରୁ ସତୁରୀ ବର୍ଷ ଭିତରେ ସେ ଦେଶରୁ ନିରକ୍ଷରତା ଲୋପ ହୋଇ ଯାଇଛି । ପାଠ ପଢିଥିବାରୁ ବିଜ୍ଞାନର ଅଗ୍ରଗତି ଫଳରେ ଯେଉଁ ଯେଉଁ ନୂଆ ଆବିଷ୍କାର ହେଉଛି, ଶିଳ୍ପର ଯେଉଁ ଅଗ୍ରଗତି ହେଉଛି ଶ୍ରମିକମାନେ ତା'ର ଖବର ରଖୁଛନ୍ତି, ନିଜର ଜ୍ଞାନ ବୃଦ୍ଧି କରୁଛନ୍ତି ଓ ସେହି ଜ୍ଞାନରୁ ଫାଇଦା ଉଠାଉଛନ୍ତି । ଜ୍ଞାନ ବୃଦ୍ଧି ଫଳରେ ଆଜିର ଶ୍ରମିକ କାଲି ସେହି କାରଖାନାର ସବୁଠାରୁ ବଡ଼ ପୋଷ୍ଟ ବା କାମ ପାଇ ପାରୁଛି ।

## କମ୍ ଭଡ଼ାରେ ମାଲ ବୁହା ହୁଏ

ଜାପାନୀ ମାନେ ଗୋଟିଏ କଥା ଭଲ ଭାବରେ ବୁଝି ନାଇଛନ୍ତି । ସେମାନେ ଜାଣନ୍ତି, ମାଲ୍ ବହିବା ଖର୍ଚ୍ଚ ଯଦି କମ୍ ହୁଏ ଅର୍ଥାତ୍ ଅଳ୍ପ ଭଡ଼ାରେ ମାଲ ନିଆଆଣ କରି ହେବ ତେବେ ବେପାର ଭଲ ଚାଲିବ । ବେପାର ଭଲ ଚାଲିଲେ ଶିଳ୍ପର ପ୍ରସାର ହେବା ସଙ୍ଗେ ସଙ୍ଗେ ଉନ୍ନତି ମଧ୍ୟ ହେବ ।

ଆମେରିକା ଯୁକ୍ତରାଷ୍ଟ୍ରରେ ପ୍ରଚୁର ଲୁହା ଓ କୋଇଲା ରହିଛି । କିନ୍ତୁ ପିଟସ୍‌ବର୍ଗରୁ ନିଉୟର୍କକୁ ଲୁହା ବହିନେବା ପାଇଁ ଯେଉଁ ଭଡ଼ା ପଡ଼ିଯାଏ ତା' ଫଳରେ ନିଉୟର୍କରେ ଲୁହା ମହର୍ଘ ହୋଇ ଯାଏ । ଯୁଦ୍ଧ ପୂର୍ବରୁ ଏକ ଟନ୍ ଲୁହା ରେଲରେ ବହି ଆଣିବାକୁ ୩.୨୫ ଡଲାର୍ ବା ପ୍ରାୟ ଏଗାର ଟଙ୍କା ଖର୍ଚ୍ଚ ପଡ଼ୁଥିଲା । ଜାପାନରେ ବହୁତ ଶସ୍ତାରେ ମାଲ ବୁହା ହୁଏ । ଦକ୍ଷିଣ ସାଗର ଅଞ୍ଚଳ ଦେଶରୁ ଜାପାନକୁ ଜାହା-ଜରେ ଟନ୍ ପିଛା ଚାରି ଟଙ୍କା ଭଡ଼ାରେ ଲୁହା ଚାଲି ଆସୁଥିଲା । ଚୀନ ଓ

ମାଞ୍ଚୁରିଆରୁ ଦୁଇରୁ ତିନି ଟଙ୍କାହିଁ ଖର୍ଚ୍ଚ ଲାଗଥିଲା । ଆମେରିକାଠାରୁ ଜାପାନରେ ଏହି ଗୋଟାକ ବଡ଼ ସୁବିଧା । ଆମେରିକା ଯୁକ୍ତରାଷ୍ଟ୍ରର ଆଟ୍‌ଲାଣ୍ଟିକ ଉପକୂଳ ପ୍ରଦେଶ ମାନଙ୍କରୁ ପଶ୍ଚିମ ପ୍ରଦେଶମାନଙ୍କୁ ଓ ପଶ୍ଚିମ ପ୍ରଦେଶ ମାନଙ୍କରୁ ଆଟ୍‌ଲାଣ୍ଟିକ ଉପକୂଳ ପ୍ରଦେଶ ମାନଙ୍କୁ ଅନ୍ୟାନ୍ୟ କଞ୍ଚା ମାଲ ବହିବାରେ ବହୁତ ଖର୍ଚ୍ଚ ହୋଇଯାଏ । ଆମେରିକାର ପଶ୍ଚିମ ଅଂଶରେ କାଠ ଖୁବ୍ ଶସ୍ତା, କିନ୍ତୁ ବହିଆଣି ପୂର୍ବ ପ୍ରଦେଶମାନଙ୍କରେ ପହୁଞ୍ଚାଇଲା ବେଳକୁ ଖୁବ୍ ମହାର୍ଘ ହୋଇ ଯାଇଥାଏ । ବହିବା ଖର୍ଚ୍ଚ କମ୍ ପଡ଼ୁ ଥିବାରୁ ନରୱେ ସୁଇଡେନ୍‌ରୁ ଆଟ୍‌ଲାଣ୍ଟିକ ପାର୍ କରାଇ କାଗଜ ତିଆରି କରିବା କାଠ ଆମେରିକାର ପୂର୍ବ ପ୍ରଦେଶ ମାନଙ୍କରେ ଶସ୍ତାରେ ବିକ୍ରି କରା ଯାଉଛି । ସେହି ଆମେରିକାର ପଶ୍ଚିମ ପ୍ରଦେଶର କାଠ ବେପାରୀମାନେ ପ୍ରତିଯୋଗିତାରେ ପାରୁ ନାହାନ୍ତି ।

ଦେଶରେ ଯଥେଷ୍ଟ କଞ୍ଚା ମାଲ ଥିଲେ ଯୁଦ୍ଧବେଳେ ଖୁବ୍ ସୁବିଧା ହୁଏ—କାରଣ ବିଦେଶରୁ ଜାହାଜ ଆସି ନ ପାରିଲେ ମଧ୍ୟ ଅସୁବିଧା ହୁଏ ନାହିଁ । ଦେଶର କଳ କାରଖାନା କଞ୍ଚା ମାଲ ଅଭାବରୁ ବନ୍ଦ ହୋଇ ଯାଏ ନାହିଁ । କିନ୍ତୁ ଶାନ୍ତି ସମୟରେ ଅନ୍ୟ ଦେଶରୁ ଯଦି ଆସି କଞ୍ଚା ମାଲ ଶସ୍ତାରେ ପହଞ୍ଚିଗଲା ତେବେ ଦେଶ ଭିତରେ କଞ୍ଚା ମାଲ ପ୍ରତିଯୋଗିତାରେ ଠିଆ ହୋଇ ପାରିବ ନାହିଁ । ଏହି କ୍ଷେତ୍ରରେ ଶସ୍ତାରେ ମାଲ ବହି ନେବାର ଗୁରୁତ୍ୱ କେତେ ସମସ୍ତେ ଅନୁଭବ କରନ୍ତି ।

ଜାପାନରେ ଅନେକ ଦରକାରୀ କଞ୍ଚାମାଲ ନ ଥିବାରୁ ବିଦେଶରୁ ଶସ୍ତାରେ ବହି ଆଣିବା ଦିଗରେ ସେ ଦେଶ ଖୁବ୍ ଧ୍ୟାନ ଦେଇଛି । ପ୍ରାକୃତିକ ସମ୍ପଦ ଦୃଷ୍ଟିରୁ ଦେଖିଲେ ଜାପାନକୁ ଗରିବ ବୋଲି କୁହାଯିବ—କିନ୍ତୁ ତା'ର ଭୌଗଳିକ ଅବସ୍ଥିତି ଏମିତି ଯେ କଞ୍ଚାମାଲ ବହି ଆଣିବା ସହଜ ହୁଏ । ଚୀନ, ମାଞ୍ଚୁରିଆ, ଦକ୍ଷିଣ ସାଗର ଦ୍ୱୀପମାଳାରେ ଜାପାନ ଦରକାର କରୁଥିବା କଞ୍ଚାମାଲ ଭରି ରହିଛି । ମାଲ ବହିବା ଖର୍ଚ୍ଚ କମ୍ ପଡ଼ୁଥିବାରୁ ଜାପାନୀ ଶିଳ୍ପ ଶସ୍ତାରେ

କଞ୍ଚାମାଲ ପାଇ ଯାଇ ପୃଥିବୀର ଅନ୍ୟ ଶିଳ୍ପ ପ୍ରଧାନ ଦେଶ ମାନଙ୍କ ସହିତ ପ୍ରତିଯୋଗିତା କରି ପାରୁଛି ।

## ଶ୍ରମିକ ମନରେ ସନ୍ତୋଷ

ଅନ୍ୟ ଯେ କୌଣସି ଦେଶ ତୁଳନାରେ ଜାପାନୀ ଶ୍ରମିକମାନେ ନିଜ କାମ ସନ୍ତୋଷରେ କରି ଯାଆନ୍ତି, 'କର୍ମରେ ତ ଅଛି ବାଧ୍ୟହୋଇ ଖଟିବାକୁ ପଡ଼ିବ' ବୋଲି ଭାବୁନ୍ତି ନାହିଁ । ଶ୍ରମିକ ମାନଙ୍କର ଏହି ସନ୍ତୋଷ ଚମନଲାଲଙ୍କ ମନକୁ ଖୁବ୍ ପାଇଛି ଓ ସେ ଧରି ନେଇଛନ୍ତି ଯେ ସନ୍ତୋଷରେ ଆନନ୍ଦରେ କାମ କରି ଯାଉଥିବାରୁ ଜାପାନର ଉତ୍ପାଦନ ବଢ଼ୁଛି । ସେ ଲେଖିଛନ୍ତି "ମୁଁ ଗୃଷ ଦେଶକୁ ଯାଇ ନାହିଁ । କିନ୍ତୁ ଇଉରୋପର ଭିନ୍ନ ଭିନ୍ନ ଦେଶ, ଆମେରିକା ଓ ପ୍ରାଚ୍ୟଦେଶ-ମାନଙ୍କରେ ବୁଲିଛି । ଜାପାନରେ ମୋ ମନକୁ ସବୁଠୁଁ ବେଶି ଗୋଟିଏ କଥା ଘେନିଛି—ତାହା ହେଉଛି, କି ସ୍ତ୍ରୀ କି ପୁରୁଷ ଜପାନୀ ଶ୍ରମିକ ମାନେ ହିଁ ପ୍ରଫୁଲ୍ଲ ମନରେ, ସନ୍ତୋଷ ଭାବରେ ଓ ସନ୍ତୋଷର ସହିତ କାମ କରି ଯାଉଛି । ଲଣ୍ଡନ, ନିଉୟର୍କ ଓ ଜାପାନର ବଡ଼ ବଡ଼ ଶିଳ୍ପ-ନଗର ମାନଙ୍କରେ 'ସହର ପଛ' ଅଞ୍ଚଳ ରହିଛି । ସେହିଠି ଶ୍ରମିକମାନେ ରହୁଛନ୍ତି । କିନ୍ତୁ ଲଣ୍ଡନ, ନିଉୟର୍କ ତୁଳନାରେ ଜାପାନ ସିଟିମାନଙ୍କରେ ସହର-ତଳି-ଅଞ୍ଚଳ ସଂଖ୍ୟା କମ୍ । ଲଣ୍ଡନ ନିଉୟର୍କର ସହର ତଳି ଅଞ୍ଚଳ ଅବସ୍ଥା ଟୋକିଓ ସହର ତଳି ଅଞ୍ଚଳଠାରୁ ଖରାପ । ପୃଥିବୀର ଅନ୍ୟ ଅଂଶର ସହର ତଳି ଅଞ୍ଚଳରେ ରହୁଥିବା ଶ୍ରମିକ ମାନଙ୍କ ସହିତ ତୁଳନା କଲେ ଦେଖା ଯିବ ସେମାନଙ୍କର ଜାପାନର ସାଙ୍ଗ ଭାଇମାନେ ଅଧିକ ମନ ଖୁସିରେ, ଅଧିକ ସନ୍ତୋଷର ସହିତ ଓ ଅଧିକ ସନ୍ତୋଷ ପଣିଆ ଦେଖାଇ କାମ କରୁଛନ୍ତି ।"

ପୃଥିବୀର ଅନ୍ୟ ଦେଶର ଶ୍ରମିକମାନଙ୍କ ତୁଳନାରେ ଜାପାନୀ ଶ୍ରମିକ ଗୁଡାଏ ଅଧିକା ପଇସା ପାଇ ଯାଉଛି ବୋଲି ଯେ ଏତେ ସନ୍ତୋଷରେ ଅଛି ତା' ନୁହେଁ । ତା'ର ସନ୍ତୋଷର ଗୋଟାଏ ବଡ଼

କାରଣ ହେଉଛି ମାଲିକର ସେମାନଙ୍କ ପ୍ରତି ଅତି ଚମତ୍କାର ବ୍ୟବହାର । ଶ୍ରମିକ ମାନଙ୍କ ପାଇଁ କାରଖାନା ଭିତରେ ବଡ଼ ବଡ଼ ଡାଇନିଙ୍ଗ୍ ହଲ୍ ଓ ଭୋଜନଶାଳାମାନ ରହିଛି; ଭଲ ଭଲ ଟେବୁଲ୍ ଚେୟାର ପଡ଼ିଛି, ଆଧୁନିକ ଧରଣର ସିନେମା ଓ ଥିଏଟର୍ ହଲ୍‌ର ବ୍ୟବସ୍ଥା ଅଛି, ବୁଲିବା ପାଇଁ ପାର୍କ, ରହିବା ପାଇଁ ପରିଷ୍କାର ଘର, ଚିତ୍ର ବିଦ୍ୟା ସଙ୍ଗୀତ ବିଦ୍ୟା ଓ ସାଧାରଣ ପାଠ ପଢ଼ିବା ପାଇଁ ଫ୍ରି ସ୍କୁଲ୍, ରୋଗ ହେଲେ ଚିକିତ୍ସା ପାଇଁ ଆଧୁନିକ ଧରଣର ଡାକ୍ତର-ଖାନା···କୌଣସିଥିର ଅଭାବ ନାହିଁ । ଏଥିରେ ସେମାନେ ନିଶ୍ଚିନ୍ତ ମନରେ ମନ ଖୁସିରେ କାମ ବା କରି ନ ଯିବେ କାହିଁକି ? କୋବେ ସହରର ମିଲ ଏରିଆରେ ଶ୍ରମିକମାନଙ୍କ ପାଇଁ ଯେଉଁ ଫ୍ରି ହସ୍‌ପିଟାଲ ରହିଛି ତାହା ଭାରତର ରାଜଧାନୀ ଦିଲ୍ଲୀର ପୂର୍ବତନ ସିଭିଲ୍ ହସ୍‌ପିଟାଲଠାରୁ ସବୁ ଗୁଣରେ ଢେର ଭଲ ବୋଲି ଚମନଲାଲଜୀ ମତ ଦେଇଛନ୍ତି । ଆମ ଦେଶର କଳ ମାଲିକମାନେ ଜାପାନ ଯାଇ ନିଜ ଆଖିରେ ଦେଖି ଆସନ୍ତୁ । ସେଠା ଶ୍ରମିକମାନେ କାହିଁକି ବେଶି କାମ କରୁଛନ୍ତି ବୋଲି ପରାମର୍ଶ ଦେଇ ଚମନଲାଲଜୀ ଲେଖିଛନ୍ତି—'ଜାପାନକୁ ଯେ ଯିବ ସେ ଦେଖି ପାରିବ ସେଠା ଅବସ୍ଥା କଣ । ମୋ ଦେଶର ମିଲ ମାଲିକମାନଙ୍କୁ ମୋର ଅନୁରୋଧ ଯେ ସେମାନେ ଜାପାନରେ ନିଜ ଆଖିରେ ଦେଖି ଆସନ୍ତୁ । ଜାପାନ କାହିଁକି ଏତେ ବଡ଼ ଶିଳ୍ପ ପ୍ରଧାନ ଦେଶ ହୋଇ ପାରିଛି ଓ ସେଠାର ଶ୍ରମିକମାନେ ଏତେ ଭଲ କାମ କାହିଁକି କରୁଛନ୍ତି । ଯେଉଁ ଦେଶ-ମାନେ ଶିଳ୍ପକ୍ଷେତ୍ରରେ ପ୍ରତିଯୋଗିତାରେ ଜାପାନ ହାତରେ ପରାସ୍ତ ହୋଇଛନ୍ତି ସେମାନେ ଯେଉଁ ମିଥ୍ୟା ପ୍ରଚାର କରୁଛନ୍ତି ସେଥିରେ ନ ଭୁଲି ଆମ ମିଲ୍ ମାଲିକମାନେ ଜାପାନ ଭୂଇଁରେ ହିଁ ପ୍ରକୃତ ରହସ୍ୟ ଭେଦ କରନ୍ତୁ । ଭାରତର ଶିଳ୍ପପତି ଓ ମିଲ୍ ମାଲିକମାନେ ଜାପାନ ଯାଇ ସବୁକଥା ଦେଖିଲେ ନିଜେ ନିଜେ ଅନୁଭବ କରିବେ ଯେ ତିନୋଟି କାରଣରୁ ଜାପାନ ଆଜି ଶିଳ୍ପ କ୍ଷେତ୍ରରେ ଏତେ ଉନ୍ନତ କରିଛି ! ପ୍ରଥମଟି ହେଲା ସେଠାର ଶ୍ରମିକ ସଚ୍ଚୋଟ ଓ ଦକ୍ଷ, ଦ୍ୱିତୀୟ କାରଣ ଶ୍ରମିକମାନଙ୍କ ପ୍ରତି ସଦୟ ବ୍ୟବହାର, ତୃତୀୟ

ହେଲା କାରଖାନା ଚଳାଇବାରେ ଖର୍ଚ୍ଚ କମ୍ ପଡୁଛି ଓ ପରିଚାଳନା ବ୍ୟବସ୍ଥାକୁ ଜଟିଳ ନ କରି ସରଳ କରା ଯାଇଛି ।

## ଅସମ୍ଭବ ସମ୍ଭବ ହୋଇଛି କିପରି ?

ସମସ୍ତେ ଯାହା ଶୁଣନ୍ତି ତାହା ସତ—ପଶ୍ଚିମ ଦେଶ ମାନଙ୍କରେ ଶ୍ରମିକ ମାନେ ଯେଉଁ ହାରରେ ମଜୁରୀ ପାଉନ୍ତି ଜାପାନୀ ଶ୍ରମିକ ତା'ଠାରୁ କମ୍ ପାଏ । ଜାପାନରେ ଶସ୍ତାରେ ମୂଲିଆ ମିଳନ୍ତି । କମ୍ ମଜୁରୀ ନେଇ ସେମାନେ କ ଭଳି ସନ୍ତୁଷ୍ଟ ରହିଛନ୍ତି ଏହି ପ୍ରଶ୍ନ ଆମ ମନରେ ଉଠିବା ସ୍ୱାଭାବିକ । ଅସମ୍ଭବଟା ସମ୍ଭବ ହେଉଛି କିପରି ବୋଲି ଜଣେ ନିଶ୍ଚୟ ପ୍ରଶ୍ନ କରିବ !

## ପରିବାର ଓ ବ୍ୟକ୍ତି ବିଶେଷ

ଜାପାନରେ ପରିବାରର ବନ୍ଧନ ଅତି ସୁଦୃଢ଼ । ପରିବାରର ବ୍ୟକ୍ତି ବିଶେଷ ସମଗ୍ର ପରିବାର ପାଇଁ ଯେ କୌଣସି ତ୍ୟାଗ କରିବା ପାଇଁ ପ୍ରସ୍ତୁତ ହୋଇ ଯାଏ । କୁଟୁମ୍ବ ଭିତରେ ସମସ୍ତେ ନିଜ ନିଜ ଭିତରେ ସହଯୋଗ କରି କାମ କରି ଯିବାରେ ଅଭ୍ୟସ୍ତ । ଫଳରେ ଜଣେ କେହି କମ୍ ରୋଜଗାର କଲେ ମଧ୍ୟ ପରିବାର ତାକୁ ଚଳାଇ ନିଏ ଓ ସେ ମନ ଖୁସିରେ ଚଳି ଯାଏ । ସେ ଦେଶର ଶ୍ରମିକର ମତ ଗତ ୟୁରୋପ ଆମେରିକା ଲୋକଙ୍କ ମତଗତ ଠାରୁ ସଂପୂର୍ଣ୍ଣ ଭିନ୍ନ ଧରଣର । ଜାପାନୀ ଜାତି ସୃଷ୍ଟି ହେଲା ଦିନୁ ପରିବାର ବା କୁଟୁମ୍ବ ପ୍ରଥା ସେ ଦେଶରେ ଚେର ମାଡ଼ି ଯାଇଛି । କେବଳ ସଂସ୍କୃତ ବା ଆଧ୍ୟାତ୍ମିକତା କ୍ଷେତ୍ରରେ ନୁହେଁ ଅର୍ଥନୈତିକ ଉନ୍ନତି କ୍ଷେତ୍ରରେ ମଧ୍ୟ ପରିବାର ବା ଗୋଷ୍ଠୀକୁ ଏକକ୍ ବା ଇଉନିଟ ବୋଲି ଧରାଯାଇଛି । ୧୮୬୮ ମସିହାରେ ଜାପାନ ଯେତେବେଳେ ନିଜର ଉନ୍ନତି ପାଇଁ ପାଶ୍ଚାତ୍ୟ ଦେଶମାନଙ୍କର ଅନୁକରଣ କଲା ସେତେବେଳେ ଆଧୁନିକ ଶିଳ୍ପ ସଭ୍ୟତା ଜାପାନକୁ ଅନେକ ପରିମାଣରେ ଗ୍ରାସ କଲା ସତ ବା ଜାପାନୀମାନେ ସେ ସଭ୍ୟତାକୁ ଆଦରି ନେଲେ ସତ, କିନ୍ତୁ ଜାପାନୀ ସମାଜରେ

ସନ୍ଧ୍ୟାବେଳେ ହାତକୁ ଲୁଗାତଳେ ଲୁଗାଇ ରଖିବା ଲଜ୍ଜାର ବିଷୟ ବୋଲି ତା' ମନ ବୁଝିଗଲା । ଆହୁରି ମଧ୍ୟ ଦେଖାଗଲା ଯେ ନାରୀ ଶ୍ରମିକ ଅଳ୍ପ ପଇସା ନେଇ ସନ୍ତୁଷ୍ଟା ହେଉଛି । ପୁରୁଷର ଅପେକ୍ଷାକୃତ ଶକ୍ତ ହାତ ପାଇଁ କେତେ ଯେ କାମ ପଡ଼ିରହିଛି ତା'ର ହିସାବ ନାହିଁ । ସେ କାମ ପାଇଁ ପୁରୁଷ ହାତକୁ ଏହି ସବୁ କାମରୁ ମୁକ୍ତ କରିଦେବା ପାଇଁ ଜାପାନୀ ଜାତି ଠିକ୍ କଲା । ସେହି ନିଷ୍ପତ୍ତିରେ ଜାପାନୀ ମହିଳା ପୂର୍ଣ୍ଣ ସହଯୋଗ କଲା ।

## ଦରିଦ୍ରରୁ ଧନୀ ପରିବାରକୁ ବ୍ୟାପିଲା

ଏ କଥା ଠିକ୍ ଯେ ଜାପାନୀ ଶିଳ୍ପରେ ମଜୁରୀ ଖଟିବା ପାଇଁ ପ୍ରଥମେ ପ୍ରଥମେ ଗରିବ ଘରର ଝିଅ ମାନେହିଁ ବାହାରିଲେ । ଟିକିଏ ପଇସାବାଲା ବା ଧନୀ ପରିବାରର ସ୍ତ୍ରୀଲୋକମାନେ କାରଖାନା ବା ଅନ୍ୟାନ୍ୟ କାମ କରି ପଇସା ରୋଜଗାର କରିବାଟାକୁ ସମ୍ମାନର କଥା ବୋଲି ସ୍ୱୀକୃତି ପାରୁ ନ ଥିଲେ । କିନ୍ତୁ ସମାଜଟାକୁ ତ କେହି ମଝିରେ ମଝିରେ କାନ୍ଥ ଦେଇ ଗୋଟାଏ ଗୋଟାଏ ବଖରା ଭଳି କରିଦେଇ ପାରିବ ନାହିଁ । ସମାଜର ଗୋଟାଏ ସ୍ତରରେ ଯାହା ଘଟିବ ଅନ୍ୟ ସ୍ତର ଉପରେ ତା'ର ପ୍ରଭାବ ନିଶ୍ଚୟ ନା ନିଶ୍ଚୟ ପଡ଼ିବ । କ୍ରମେ ଧନୀ ଘରର ବା ଅନ୍ୟ ଭାଷାରେ କହିଲେ ସମାଜର ଉପର ସ୍ତର ବୋଲି ଯାହାକୁ କହୁ ସେହି ସ୍ତରରେ ଥିବା ଘରର ଝିଅମାନଙ୍କ ଉପରେ ଜାପାନୀ ମହିଳା ଶ୍ରମିକର ପ୍ରଭାବ ପଡ଼ିଲା ଓ ଶ୍ରମ କରିବାରେ, ଶିଳ୍ପ କ୍ଷେତ୍ରରେ କାମ କରିବାରେ, କାରଖାନାରେ ମଜୁରୀ ଖଟିବାରେ ଯେ ଗୌରବ-ହାନି ହୁଏ ନାହିଁ, ଏ କଥା ଜପାନୀ ମହିଳାମାନେ ସବୁ ସ୍ତରର ମହିଳା ମାନେ ବୁଝିଗଲେ ଓ ଜାପାନରେ ଶ୍ରମର ମର୍ଯ୍ୟାଦା ବଢ଼ିଗଲା ।

## ଶ୍ରମ ସଙ୍ଗେ ସଙ୍ଗେ ପାଠ

ଜାପାନୀ ମହିଳା ଶିଳ୍ପ କ୍ଷେତ୍ରକୁ ମୁକ୍ତି ଆସିବା ପରେ ପରେ ପାଠ ପ୍ରତି ଆଗ୍ରହ ଯଥେଷ୍ଟ ବଢ଼ିଗଲା । ଗୋଟିଏ ଗୋଟିଏ ମହିଳା ପତ୍ରିକା

ବା ମାଗାଜିନର ଗ୍ରାହକ ସଂଖ୍ୟା ଲକ୍ଷ ଲକ୍ଷ ହୋଇ ଗଲା । ପ୍ରଥମେ ପ୍ରଥମେ ଜାପାନୀ ମହିଳା ମାଗାଜିନମାନଙ୍କରେ ଅନେକ ଫଟୋ ପ୍ରକାଶ କରା ଯାଉଥିଲା । ପ୍ରମାଣ କରିବାପାଇଁ ଯେ ଧନୀ ଘରର ଝିଅ-ମାନେ ମଧ୍ୟ କାରଖାନାମାନଙ୍କରେ ମଜୁରୀ ଖଟୁଛନ୍ତି ।

ଜାପାନରେ ଝିଅ ମାନଙ୍କୁ ଯେତେବେଳେ ଶିକ୍ଷା ଦେବା କାମ ପ୍ରଥମେ ଜୋର ସୋରରେ ଚାଲିଲା ସେତେବେଳେ ଲକ୍ଷ୍ୟ ସ୍ଥିର ହେଲା ଯେ ସେମାନଙ୍କୁ ଶିକ୍ଷା ଦେଲା ବେଳେ—ପାଠ ପଢ଼ାଇଲା ବେଳେ ପୁରୁଷମାନଙ୍କ ସହିତ ସେମାନଙ୍କର ସମାନ ଅଧିକାର ଅଛି, ଏହିକଥା ଉପରେ ଜୋର ନ ଦେଇ ସେମାନେ "ଆଦର୍ଶ ସ୍ତ୍ରୀ ଓ ବୁଦ୍ଧିମତୀ ମା" ହେବାକୁ ଶିକ୍ଷା ପାଉଛନ୍ତି ବୋଲି ଜୋର ଦିଆ ଯିବ । ବାଳିକା ସ୍କୁଲର ପ୍ରଧାନ ଶିକ୍ଷୟିତ୍ରୀ ଯଦି ଏହି ଦିଗପ୍ରତି ଦୃଷ୍ଟି ନ ଦେଉଥିଲା ତା' ଚାକିରୀ ଯାଉଥିଲା । ଜାପାନୀ ଝିଅକୁ ପୁରୁଷ ସହିତ ସମାନ ଅଧିକାର ପାଇବା ପାଇଁ ହିଁ ପାଠ ପଢ଼ା ଯାଉଛି ବୋଲି ଶିକ୍ଷୟିତ୍ରୀ ପ୍ରକାଶ୍ୟ ଭାବରେ କହିବା ଦୋଷ ବୋଲି ଧରା ଯାଉଥିଲା । ଆଜି ଯେଉଁ କଟକଣା କଥା ଶୁଣିଲେ ଲୋକେ ବିଶ୍ୱାସ କରିବେ ନାହିଁ, ସ୍ତ୍ରୀ ଶିକ୍ଷା ସଂକ୍ରାନ୍ତରେ ସେହିଭଳି କଟକଣା ଥିଲା । ସେମାନେ ଟ୍ରେନ୍ ବସ୍‌ରେ ଗଲାବେଳେ ବହି ବା ଖବର କାଗଜ ପଢ଼ିଲେ ଉଦ୍ଧତ ପଣିଆ ଦେଖାଉଛନ୍ତି ବୋଲି ବିଚାର କରା ଯାଉଥିଲା । କ୍ରମେ କ୍ରମେ ସେ ସବୁ କଟକଣା ଧୁଏଁ ଧୁଏଁ ଚାଲି ଗଲା ।

## ସ୍ୱାସ୍ଥ୍ୟ ବଦଳିଗଲା

ବାଳିକା ସ୍କୁଲମାନଙ୍କରେ ବ୍ୟାୟାମ ଶିକ୍ଷା ପଦ୍ଧତି କ୍ରମେ କ୍ରମେ ବଦଳିବା ସଙ୍ଗେ ସଙ୍ଗେ ସେମାନଙ୍କର ସ୍ୱାସ୍ଥ୍ୟର ଖୁବ୍ ଉନ୍ନତି ଘଟିଲା । ଅମୁକ କାମଟା ସେମାନେ କରି ପାରିବେ ନାହିଁ ବୋଲି କହିବାର ଅବକାଶ ରହିଲା ନାହିଁ । ଅନେକ ପ୍ରକାରର କଠିନ କାର୍ଯ୍ୟ ସେମାନେ ସହଜରେ କରିଗଲେ । କେତେ ଗଡ଼ାଏ କଠିନ କାମ କଲେ ସ୍ତ୍ରୀ

ଲୋକମାନଙ୍କର ସ୍ୱାସ୍ଥ୍ୟ ହାନି ଘଟିବ ବୋଲି ଯେଉଁ ଆଶଙ୍କା କରାଯାଉଥିଲା ସେଭଳି ଆଶଙ୍କା ଆଉ କରାଗଲା ନାହିଁ ।

## ପ୍ରଥମ ମହାଯୁଦ୍ଧରୁ ଶିକ୍ଷା

ଇଉରୋପରେ ଯେଉଁ ପ୍ରଥମ ମହାଯୁଦ୍ଧ ହେଲା [ ୧୯୧୪ରେ ] ତା'ର ପ୍ରଭାବ ଜାପାନର ସାମାଜିକ ଜୀବନ ତଥା ସଭ୍ୟତା ଉପରେ କିପରି ପଡ଼ିଲା ତାହା କଳ୍ପନା କରି ହେବ ନାହିଁ । ଜାପାନର ଭୌଗୋଳିକ ପରିସ୍ଥିତି ଏପରି ଯେ ଜାତୀୟ ବିପଦ ବୋଲି କହିଲେ ଯାହା ବୁଝାଏ ସେଭଳି ବିପଦ ତା' ଉପରକୁ ବେଶି ଥର ଆସି ନ ଥିଲା । ଋଷ-ଜାପାନ ଯୁଦ୍ଧ ଓ ଚୀନ-ଜାପାନ ଯୁଦ୍ଧରେ ହିଁ ସେମାନେ ଭାବିଥିଲେ ଯେ ଦେଶ ଉପରକୁ ବିପଦ ଆସି ଯାଇଥିଲା । ମହାଯୁଦ୍ଧ ବେଳେ ଇଉରୋପୀୟ ଜାତିମାନେ ଯେଭଳି ଭାବରେ ନିଜ ଦେଶକୁ ବିପଦର ସମ୍ମୁଖୀନ ହେବାପାଇଁ ପ୍ରସ୍ତୁତ କରିନେଲେ ସେକଥା ଦେଖି ଜାପାନୀମାନଙ୍କ ଆଖି ଖୋଲିଗଲା । ସେମାନଙ୍କର ପୁରୁଣା କାଳିଆ ମନୋଭାବ ଭିତରେ କି ବିପଦ ଲୁଚି ରହିଛି ସେମାନେ ତାହା ସ୍ପଷ୍ଟ ଦେଖି ପାରିଲେ । ଜାପାନୀ ଜାତିର ଦୃଢ଼ ବିଶ୍ୱାସ ଥିଲା ଯେ ଗୋଟାଏ ଶକ୍ତିଶାଳୀ ସୈନ୍ୟବାହିନୀ ହିଁ ଦେଶକୁ ଶତ୍ରୁ ଆକ୍ରମଣରୁ ରକ୍ଷା କରିବା ପାଇଁ ଯଥେଷ୍ଟ । ସେ ସୈନ୍ୟବାହିନୀ ପଛରେ ଜାତିଟାର ଦେଶପ୍ରେମ ଜ୍ଞାନ ଥିଲେହିଁ ଯଥେଷ୍ଟ । କିନ୍ତୁ ପ୍ରଥମ ମହାଯୁଦ୍ଧ ବେଳର ଘଟଣା ଦେଖି ସେମାନଙ୍କ ଧାରଣା ବଦଳି ଗଲା । ସେମାନେ ସ୍ପଷ୍ଟ ବୁଝିଗଲେ ଯେ ଜାତି ଉପରକୁ ବିପଦ ଆସି ଗଲା ବେଳେ ଜାତିର ଗୋଟାଏ ଅଂଶକୁ ପ୍ରସ୍ତୁତ କରିଦେଲେ, ସଜାଗ କରିଦେଲେ କାମ ଚଳିବ ନାହିଁ କି ପୁରୁଷ କି ସ୍ତ୍ରୀ ସମସ୍ତଙ୍କୁ ତାଲିମ କରି ଦେବାକୁ ହେବ । ସମସ୍ତଙ୍କ ଉପରେ ଦେଶ ରକ୍ଷାର ଭାର ପକାଇ ଦେବାକୁ ହେବ । ତା' ନ ହେଲେ ରକ୍ଷା ନାହିଁ । ପୁରୁଷ ଓ ସ୍ତ୍ରୀ ପରସ୍ପରର ସମକକ୍ଷ ହୋଇ ଠିଆ ହୋଇ ନ ଗଲେ ଜାତିର ରକ୍ଷା ନାହିଁ ।

ପ୍ରଥମ ମହାଯୁଦ୍ଧ ଚାଲିଥିଲା ବେଳେ ୧୯୧୭ରୁ ୧୮ ଭିତରେ ସରକାର ବାଳିକା ସ୍କୁଲ ଓ କଲେଜମାନଙ୍କରେ ବ୍ୟାୟାମ ଶିକ୍ଷା

ଦେବା ପ୍ରଣାଳୀରେ ବିପ୍ଳବାତ୍ମକ ପରିବର୍ତ୍ତନ କରାଇଲେ । ସେମାନଙ୍କୁ ଏଭଳି ଶିକ୍ଷା ଦିଆଗଲା ଯେ ଜାତିର ବିପଦ ବେଳେ ଦରକାର ପଡ଼ିଲେ ପୁରୁଷମାନେ ଯେଉଁ କାମ କରୁଛନ୍ତି ସ୍ତ୍ରୀଲୋକମାନେ ଯେପରି ଠିକ ସେହି କାମ କରି ପାରିବେ । ଅମୁକ କାମଟା ସେମାନେ ସ୍ତ୍ରୀଲୋକ ହୋଇ ଥିବାରୁ କରିପାରିବେ ନାହିଁ ବୋଲି ଆଉ ଯୁକ୍ତି କରାଗଲା ନାହିଁ । ରୋଷେଇଠାରୁ ଉଡ଼ାଜାହାଜ ଚଲାଇବା ପର୍ଯ୍ୟନ୍ତ ସବୁକାମ ପାଇଁ ସେମାନଙ୍କୁ ତାଲିମ କରିବାରେ କେହି କିଛି ହେଲେ ଦୋଷ ଦେଖିଲେ ନାହି ।

## ଭୂମିକମ୍ପଟା ମନକୁ ମଧ୍ୟ ଦୋହଲାଇ ଦେଲା

ଜାପାନର ମା' ଭଉଣୀମାନଙ୍କ ଦୃଷ୍ଟିକୋଣରେ ଏହିଭଳି ପରିବର୍ତ୍ତନ ଘଟୁଥିବା ବେଳେ ୧୯୨୩ ମସୀହାରେ ଜାପାନରେ ଅତି ଭୀଷଣ ଭୂମିକମ୍ପ ହେଲା । ସେଥିରେ ଜାପାନର ଗୋଟାଏ ବଡ଼-ଅଂଶ ଛାରଖାର ହୋଇଗଲା । ଦେଶଟାକୁ ନଆ କରି ଗଢ଼ିବା ପାଇଁ କି ପୁରୁଷ କି ସ୍ତ୍ରୀ ସମସ୍ତଙ୍କ ସହଯୋଗ ଦରକାର ପଡ଼ିଲା । ମହାଯୁଦ୍ଧ ଫଳରେ ଇଉରୋପ ଓ ଆମେରିକାର ମହିଳାମାନେ ବ୍ୟବସାୟ ବାଣିଜ୍ୟ କ୍ଷେତ୍ରରେ ଓ ଅନ୍ୟ ଅନେକ କ୍ଷେତ୍ରରେ ପୁରୁଷମାନଙ୍କ ଇଲାକାକୁ ପଶି ଆସିଲା ଭଳି ଭୂମିକମ୍ପର କୁଫଳ ସହିତ ଜାପାନର ଯେଉଁ ମହାଯୁଦ୍ଧ ହେଲା ତା'ଫଳରେ ଜାପାନୀ ମହିଳାମାନେ ବ୍ୟବସାୟ ବାଣିଜ୍ୟ କ୍ଷେତ୍ରକୁ ପଶିଆସିଲେ । ସମାଜର କୌଣସି ସୁଯୋଗରୁ ବଞ୍ଚିତ ହେବା ପାଇଁ ସେମାନଙ୍କୁ କେହି କହି ପାରିଲା ନାହିଁ ।

ଏହିକଥା ହେବା ସଙ୍ଗେ ସଙ୍ଗେ ଜାପାନୀ ମହିଳାମାନଙ୍କର ପୋଷାକ ମଧ୍ୟ ବଦଳିଗଲା । କାମ କରିବାର ସୁବିଧା ହେବ ବୋଲି ସେମାନେ ଇଉରୋପୀୟାନ ମହିଳାମାନଙ୍କ ଭଳି ପୋଷାକ ପିନ୍ଧିବାକୁ ଆରମ୍ଭ କଲେ ।

ଏ କଥା ଅବଶ୍ୟ ସତ ଯେ କାମ କରିବାକୁ ସୁବିଧା ହେବ ବୋଲି ପାଶ୍ଚାତ୍ୟ ପୋଷାକକୁ ଆଦରି ଯିବା ସଙ୍ଗେ ସଙ୍ଗେ କେତେଗୁଡ଼ାଏ

ପାଶ୍ଚାତ୍ୟ ଚାଲିଚଳନ ଜାପାନୀ ମହିଳାମାନଙ୍କ ଭିତରେ ବସା ବାନ୍ଧି ଯାଉଛି । କିନ୍ତୁ ସେଗୁଡ଼ା ଅସ୍ଥାୟୀ ବୋଲି ଜାପାନର ସମାଜ ସଂସ୍କାରକମାନେ କହୁଛନ୍ତି ।

ଯାହା ହେଉ ଆଜି ଜାପାନୀ ଝିଅମାନେ ମଟରକାର ରେସ୍‌ରେ ପ୍ରତିଯୋଗିତା କରୁଛନ୍ତି, ଉଡ଼ାଜାହାଜ ଚଳାଉଛନ୍ତି ଓ ଆକାଶରୁ ପାରାଚୁଟ୍ ବା ଆକାଶଛତା ସାହାଯ୍ୟରେ ଓହ୍ଲାଉଛନ୍ତି ।

## ଜାପାନୀ ଝିଅର ତ୍ୟାଗ

ଜାପାନୀ ଝିଅମାନଙ୍କର ତ୍ୟାଗ ମନୋବୃତ୍ତି ବିଷୟରେ ଚମନ୍‌ଲାଲ୍‌ଜୀ ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି—"ଜାପାନୀ ମହିଳା ମାନଙ୍କର ଗୋଟିଏ ଗୁଣର ପ୍ରଶଂସା ମୁଁ ଖୁବ୍ କରେ । ସେଇଟି ହେଉଛି ସେମାନଙ୍କର ତ୍ୟାଗ ମନୋବୃତ୍ତି । ମୁଁ ଦମ୍ଭର ସହିତ ସାହାସର ସହିତ କହିପାରେ ଯେ ଶିଳ୍ପ କ୍ଷେତ୍ରରେ ଜାପାନର ସଫଳତା ପାଇଁ ଜାପାନୀ ମହିଳାମାନଙ୍କର ତ୍ୟାଗ ମନୋବୃତ୍ତି ଆଠ'ଣାରୁ ଅଧିକ ଦାୟୀ । ଭାରତର କେତେକ ଅଞ୍ଚଳରେ ଝିଅଟି ବାପ ମା'ଙ୍କ ଉପରେ ଗୋଟିଏ ବୋଝ ବୋଲି ଧରି ନିଆଯାଏ । କିନ୍ତୁ ଜାପାନରେ ସବୁ-ଘରେ ଝିଅଟି ଭଗବାନଙ୍କର ଗୋଟିଏ ବର । ବାପ ମା'ଙ୍କ ପ୍ରତି ଜାପାନୀ ଝିଅର ଶ୍ରଦ୍ଧା ଓ ଭକ୍ତି ଅତୁଳନୀୟ । ଜାପାନୀ ଚାଷୀ ଯେତେବେଳେ ଅତି ଦରିଦ୍ର ଅବସ୍ଥାରେ ଥିଲା ସେତେବେଳେ ବାପ ମା'ଙ୍କ ପେଟ ପୋଷିବା ପାଇଁ ଶହ ଶହ ଜାପାନୀ ଝିଅ ନିଜକୁ ବିକ୍ରି କରି ଦେଉଥିଲେ । ଆଜି ଅବଶ୍ୟ ଆଇନ କରି ସେ ପ୍ରଥା ବନ୍ଦ କରି ଦିଆ ଯାଇଛି । ଜାପାନୀ ଝିଅମାନେ ଆଜି ଜାପାନର ତ୍ରାଣକର୍ତ୍ତ୍ରୀ ।"

## ତାଙ୍କରି ଯୋଗୁଁ ଶିଳ୍ପ ବଞ୍ଚିଛି

ସରକାରୀ ସୂତ୍ରରୁ ମିଳିଥିବା ହିସାବରୁ ଦେଖାଯାଉଛି ଯେ ସୂତାକଟା ଓ ଲୁଗା ବୁଣା ଶିଳ୍ପରେ ଯେତେ ଘଣ୍ଟା କାମ ହୁଏ ସେଥିର

ଶତକଡ଼ା ୮୨.୪ ଭାଗ ମହିଳା ମାନେ ହିଁ କରନ୍ତି । ସେ ଶିଳ୍ପରେ ଲାଗିଛନ୍ତି ୭୪୦୫୧୧ ଜଣ ମହିଳା ଅଥଚ ୧୫୮୨୮୧ ଜଣ ପୁରୁଷ । ଅନ୍ୟ ଛୋଟ ଛୋଟ ଶିଳ୍ପ ମାନଙ୍କରେ ମହିଳାଙ୍କ ସଂଖ୍ୟା ଶହକେ ୫୪ ଜଣ । କାଠ, ମେସିନାରୀ, କେମିକାଲ୍, ଛାପାଖାନା, ଲୁହା ପ୍ରଭୃତି ଧାତୁ, ବିଜୁଳି କାରଖାନା ଶିଳ୍ପରେ ପୁରୁଷ ମାନଙ୍କ ସଂଖ୍ୟା ଅଧିକ ହେଲେ ମଧ୍ୟ ମୋଟ ମହିଳା ଶ୍ରମିକଙ୍କ ସଂଖ୍ୟା ୮୮୭,୨୩୪ ହେବା-ସ୍ଥଳେ ପୁରୁଷଙ୍କ ସଂଖ୍ୟା ୭୭୪,୦୯୮ ।

ସବୁଆଡ଼୍ ସବୁଆଡ଼୍ ହିସାବ କଲେ ଦେଖିବା ଯେ ଜାପାନରେ କାମ କରିବା ବୟସର ୨୯,୦୦୦,୦୦୦ ମହିଳାଙ୍କ ଭିତରୁ ୯,୯୩୦,୦୦୦ ଜଣ ଶିଳ୍ପରେ ମଜୁରି ଖଟୁଛନ୍ତି । ଲୁହା କାରଖାନା ପ୍ରଭୃତିରେ କାମ କରିବା ପାଇଁ ସେମାନେ ଅଧିକରୁ ଅଧିକ ଆଗ୍ରହ ପ୍ରକାଶ କଲେଣି ଓ ଯୋଗ୍ୟତା ଦେଖାଇଲେଣି । ଶାରୀରିକ ପରିଶ୍ରମ ପ୍ରତି ଆଗ୍ରହ ଦେଖାଇବା ସଙ୍ଗେ ସଙ୍ଗେ ମାନସିକ ଶ୍ରମ ପ୍ରତି ଆଗ୍ରହ ଦେଖାଇବାରେ ମଧ୍ୟ ସେମାନେ ପଛଉ ନାହାନ୍ତି । ଡାକ୍ତର, ନର୍ସ, ଶିକ୍ଷକ କାମ କରିବା ପାଇଁ ସେମାନେ ହଜାର ହଜାର ସଂଖ୍ୟାରେ ବାହାରୁଛନ୍ତି ।

ଗତ ମହାଯୁଦ୍ଧ ପୂର୍ବରୁ କୋଟିକରୁ ଅଧିକ ମହିଳା ଜାପାନରେ କାମ କରୁଥିଲେ । ସେମାନଙ୍କର ଶ୍ରେଣୀ ବିଭାଗ ଏହି ଭଳି କରା ଯାଇ ଥିଲା :—

| | |
|---|---|
| କୃଷିକାମରେ | ୫,୭୯୦,୦୦୦ |
| ଗୃହକର | ୭୧୯,୦୦୦ |
| ସୂତା ଲୁଗା କଳରେ | ୪୭୯,୦୦୦ |
| ବ୍ୟବସାୟରେ | ୪୧୭.୦୦୦ |
| ହୋଟେଲରେ ଚାକରାଣୀ | ୩୨୩,୦୦୦ |
| ଶିକ୍ଷା କ୍ଷେତ୍ରରେ | ୧୦୬,୦୦୦ |
| ଡାକ୍ତରୀ କ୍ଷେତ୍ରରେ | ୬୨,୦୦୦ |

| | |
|---|---|
| ଯାତାୟତ ବିଭାଗରେ (ଟେଲିଫୋନ ବାଳିକା ଇତ୍ୟାଦି) | ୫୧, ୦୦୦ |
| Coocoonerv & filatme | ୨୧୭, ୦୦୦ |

## ସୂତା ଲୁଗା କଳ

'କଳ' କହିଲେ ଆମ ଦେଶରେ ଯାହା ବୁଝୁଛୁ ଜାପାନରେ ଠିକ୍ ସେହିଭଳି ବୁଝନ୍ତି ନାହିଁ । ବିଜୁଳିଶକ୍ତି ସାହାର୍ଯ୍ୟରେ ଚାଲୁଥିବା ଛୋଟ ଛୋଟ ମେସିନ ସାହାଯ୍ୟରେ ସୂତା କଟା ଯାଉଛି । ଲୁଗା ବୁଣା ଯାଉଛି । ବଡ଼ ବଡ଼ କଳ କାରଖାନା ଅଛି । ଛୋଟ ଛୋଟ ହଜାର ହଜାର ମେସିନ କାମ କରୁଛି । ଦୁଇ ଚାରିଜଣ ଲୋକ ମେସିନଟିଏ ଚଳାଇଲେ ମଧ ସେମାନେ କଳ ବା କାରଖାନାରେ କାମ କରୁଛନ୍ତି ବୋଲି ଧରା ଯାଉଛି । କଳ ଗୁଡ଼ିକୁ ଲୋକ ନିଯୁକ୍ତି ହିସାବ ଧରି ଶ୍ରେଣୀ ବିଭାଗ କରାଯାଇଛି । ଛୋଟରୁ ବଡ଼ ଯେଉଁ କଳ ଦେଖି ସବୁଥିରେ ମହିଳା ଶ୍ରମିକମାନେ ହିଁ ଅତି ଅଧିକ ସଂଖ୍ୟାରେ କାମ କରୁଛନ୍ତି । ଛୋଟ ବଡ଼ ହୋଇ ଯେଉ ୪୮୮୩୨ଟି କାରଖାନା ଅଛି ସେଥିରେ କାମ କରୁଥିବା ଶ୍ରମିକମାନଙ୍କ ଭିତରୁ ସୂତା କଳରେ ସ୍ତ୍ରୀ ଶ୍ରମିକ ଶତକରା ୮୮ ଓ ଲୁଗା କଳରେ ଶତକରା ୮୭ ।

ବିଆସିଲ କଳ ମାନଙ୍କରେ ସ୍ତ୍ରୀ ଲୋକମାନେ ହିଁ ଅଧିକ ସଂଖ୍ୟାରେ ଶ୍ରମିକ ଭଳି କାର୍ଯ୍ୟ କରନ୍ତି । ସେମାନଙ୍କ ଭିତରୁ ୫୦ ବର୍ଷ ବୟସରୁ ଅଧିକ ବୟସର ବହୁ ଶ୍ରମିକ ଅଛନ୍ତି । ୧୬ ବର୍ଷରୁ କମ୍ ଝିଅ ମଧ ଏହି କଳମାନଙ୍କରେ କାମ କରୁଛନ୍ତି ।

## ନାରୀଶ୍ରମିକଙ୍କ ପ୍ରତି ବ୍ୟବହାର

ଯେଉଁ ଲକ୍ଷ ଲକ୍ଷ ନାରୀ ଶ୍ରମିକ ଜାପାନର ଉନ୍ନତି ପାଇଁ ଏତେ କାମ କରୁଛନ୍ତି ଯେ ସେମାନଙ୍କୁ ଜାପାନର ପ୍ରାଣକର୍ତ୍ତ୍ରୀ ବୋଲି କୁହା ଯାଉଛି । ସେମାନଙ୍କ ପ୍ରତି ଜାପାନର କଳ ମାଲିକ ତଥା ଜାପାନୀ ଜାତି କଭଳି ବ୍ୟବହାର କରୁଛି ଅର୍ଥାତ୍ ସେମାନଙ୍କ ସୁଖ ସ୍ୱାଚ୍ଛନ୍ଦ୍ୟ

ପାଇଁ କ'ଣ କରା ଯାଉଛି ତାହା ଆମେ ଶ୍ରୀ ଚମନ୍‌ଲାଲ୍‌ଙ୍କ ଠାରୁହିଁ ଶୁଣିବା—ଅନେକ ସ୍ଥାନରେ, ବିଶେଷ କରି କୋବେ ସହରରେ ମୁଁ ନିଜେ ଦେଖିଛି ଯେ ଝିଅ ଶ୍ରମିକମାନଙ୍କର ଖୁବ୍ ଯତ୍ନ ନିଆଯାଏ ଓ ସେମାନଙ୍କ ସୁଖ ସ୍ୱାଚ୍ଛନ୍ଦ୍ୟ ପାଇଁ ସବୁ ବ୍ୟବସ୍ଥା କରାଯାଏ । ଭାରତରେ ନାରୀ ଶ୍ରମିକ ଯେତେବେଳେ କାରଖାନାରେ କାମ କରୁଛି ସେ ବିଚାରୁଛି ଯେ ସେ ଯେପରି ବାଧ୍ୟ ହୋଇ କାମ କରୁଛି-କିନ୍ତୁ ଜାପାନୀ ନାରୀ ଶ୍ରମିକ ତା'ର କର୍ତ୍ତବ୍ୟ କରୁଛି ବୋଲି ବିଚାରି ଆନନ୍ଦରେ କାମ କରି ଯାଉଛି । ସେମାନଙ୍କୁ ଦେଖିଲି ଫୁର୍ତ୍ତିରେ, ଆନନ୍ଦରେ ସବୁ ବେଳେ ସଜାଗ ରହି କାମ କରି ଯାଉଛନ୍ତି । ସେମାନଙ୍କ ଘର ଓ କାରଖାନା ଅଞ୍ଚଳକୁ ସେମାନେ କି ଭଳି ସଫା ରଖିଛନ୍ତି ଦେଖିଲେ ସ୍ୱୀକାର କରିବାକୁ ହେବ ଯେ ଅନେକ ଦେଶଙ୍କର ସେଥିରୁ ବହୁତ ଶିଖିବାର ଅଛି । କାରଖାନା ପାଖକୁ ଲାଗି ଗୋଟିଏ ପାର୍କ, ସିନେମା ଘର, ସ୍କୁଲ ଓ ହସ୍‌ପିଟାଲ ରହିଛି । ଏହିଥିରୁ ପ୍ରମାଣ ମିଳିଯିବ ସେମାନେ ଶ୍ରମିକମାନଙ୍କର ଯତ୍ନ କି ଭଳି ନେଉଛନ୍ତି । ଭାରତର କେତେକ ଲକ୍ଷ ପତିଙ୍କ ଲୁଗାପଟା, ବିଛଣା ଓ ଘର ତୁଳନାରେ ସେମାନଙ୍କ ଲୁଗାପଟା ବିଛଣା ଓ ଘର ନିଶ୍ଚୟ ଅଧିକ ପରିଷ୍କାର । ସେମାନଙ୍କ ଦୋମହଲା ହସ୍‌ପିଟାଲ ଦିଲ୍ଲୀର ସିଭିଲ୍ ହସ୍‌ପିଟାଲଠୁଁ ଢେର ଭଲ । କାମରୁ ଛୁଟି ମିଳିଥିବା ବେଳେ ଦଳେ ଝିଅ ସୁନ୍ଦର ହରରଙ୍ଗୀ ପୋଷାକ ପିନ୍ଧି ପାର୍କରେ ବୁଲୁଥିବା ବେଳେ ମୋ ଆଖି ବିଶ୍ୱାସ କରି ପାରିଲା ନାହିଁ ଯେ ସେମାନେ ମିଲ୍‌ରେ ମଜୁରୀ ଖଟନ୍ତି । ଆମ ଦେଶର ଅନେକ ରାଜକୁମାରୀଙ୍କର ଈର୍ଷାହେବ ଯଦି ସେମାନେ ସେହି ମିଲ୍‌ରେ କାମ କରୁଥିବା ମହିଳା ଶ୍ରମିକମାନଙ୍କର ସ୍ୱାଧୀନତା ଓ ଆନନ୍ଦ ଦେଖିବେ ।

"ଯେତେ ଝିଅ ମଜୁରୀ ଖଟନ୍ତି ସମସ୍ତଙ୍କ ପାଇଁ ବିନା ପଇସାରେ ପାଠ ପଢ଼ିବାର ବ୍ୟବସ୍ଥା ତ ରହିଛି ସେମାନଙ୍କ ସ୍ୱାସ୍ଥ୍ୟ ଓ ଚିକିତ୍ସା ପାଇଁ ଇନ୍‌ସୁରେନ୍‌ସ୍ ମଧ୍ୟ କରି ଯାଇଛି । ବୋନସ୍ ତ ରହିଛି । ପ୍ରଥମ ବର୍ଷ ଶେଷରେ ୪୦ ରୁ ୬୦ ଦିନର ବୋନସ ମିଳେ ଓ

ତେଣିକି ବୋନସର ଶତକଡ଼ା ଦଶରୁ କୋଡ଼ିଏ ଭାଗ ବଢ଼ି ବଢ଼ି ଯାଉଥାଏ । ସାଧାରଣତଃ ୨୪ ବର୍ଷ ପାଇଁ ସେମାନେ କାମ କରନ୍ତି । ଅଧିକାଂଶ କ୍ଷେତ୍ରରେ ବିବାହ ପାଇଁ କାମ ଛାଡ଼ି ଦେଇ ଚାଲି ଯାଆନ୍ତି ।

"ମୁଁ ଯେଉଁ ମିଲ୍ କଥା କହୁଛି ସେ ଯେଉଁ କମ୍ପାନୀର ତା' ଅଧୀନରେ ୧୧୫ଟା ଫାକ୍ଟରୀ ରହିଛି ଓ ମୋଟରେ ୪୫୦୦୦ ଲୋକ କାମ କରନ୍ତି । ମୁଁ ଏ କଥା ବେଶ୍ କହିପାରେ ଯେ ଋଷକୁ ଛାଡ଼ିଦେଲେ ଅନ୍ୟ କୌଣସି ଦେଶରେ ଶ୍ରମିକମାନଙ୍କ ପାଇଁ ସ୍ୱାସ୍ଥ୍ୟ ବିଷୟକ ବକ୍ତୃତା, ଲାଇବ୍ରେରୀ, ପାଠଚକ୍ର, ଚଳନ୍ତି ପାଠଶାଳା, ସିନେମା, ଥିଏଟର, ଫୁଟ୍‌ବଲ, ବେସ୍ ବଲ ଓ ଟେନିସ ଖେଳର ବ୍ୟବସ୍ଥା ରହିଛି । କିନ୍ତୁ ଜାପାନରେ ପ୍ରାୟ ସବୁ କାରଖାନାରେ ଏହି ବ୍ୟବସ୍ଥା ରହିଛି ।

"ମୋ କଥାରୁ ଏତକ ଯେମିତି କେହି ନ ବୁଝନ୍ତି ଯେ ଜାପାନର ଛୋଟ ବଡ଼ ସବୁ କାରଖାନାରେ ମହିଳା ଶ୍ରମିକମାନଙ୍କ ପାଇଁ ଠିକ ଏହିଭଳି ସୁବିଧା ସୁଯୋଗ ଅଛି । ଅନେକ ଛୋଟ ଛୋଟ କାରଖାନାରେ ଏହାଠାରୁ ଢେର କମ୍ ସୁବିଧା ସୁଯୋଗ ଅଛି । କିନ୍ତୁ ସାଧାରଣତଃ ସେମାନେ ଭଲରେ ଅଛନ୍ତି ।

ଶେଷରେ ଚମନ୍‌ଲାଲଜୀ କହିଛନ୍ତି— 'ଗଲା ୨୫୦୦ ବର୍ଷ ଭିତରେ ଜାପାନୀ ସ୍ତ୍ରୀମାନେ ଯେଉଁ ସୁବିଧା ସୁଯୋଗ ନ ପାଉଥିଲେ ଆଜି ତାହା ପାଉଛନ୍ତି । ଜାପାନର ଭବିଷ୍ୟତ ତା'ର ସ୍ତ୍ରୀମାନଙ୍କ ହାତ ମୁଠାରେ ରହିଛି ।"

—୦—

## ପ୍ରାକୃତିକ ସମ୍ପଦ ଭରା

## କିନ୍ତୁ ଖଣିଜ ଦ୍ରବ୍ୟର ଅଭାବ

ଯେଉଁ ଦେଶର ପ୍ରାକୃତିକ ସମ୍ପଦ ଖୁବ୍ ବେଶି ନୁହେଁ, ସେ ଦେଶ ସମୃଦ୍ଧିଶାଳୀ ହୋଇ ପାରିବ ନାହିଁ ବୋଲି ଯେଉଁ କଥା କୁହାଯାଏ ସେଥିରେ ଯଥେଷ୍ଟ ସତ୍ୟ ଥିଲେ ମଧ୍ୟ ଯେଉଁ ଦେଶକୁ ପ୍ରକୃତି ଯଥେଷ୍ଟ ଶିଳ୍ପ କଂଚାମାଲ୍ ଦେଇନାହିଁ ସେ ଦେଶକୁ ଅନ୍ୟ ବାଟରେ ସମୃଦ୍ଧି କରି ସେ କ୍ଷତିକୁ ପୂରଣ କରି ଦେଇଛି। ଜାପାନ ତା'ର ଗୋଟିଏ ଜ୍ୱଳନ୍ତ ଉଦାହରଣ। ଆଜିକାଲିର ଶିଳ୍ପ ସଭ୍ୟତାର ମୂଳପିଣ୍ଡ ଲୁହାରୁ ଜାପାନ ବଞ୍ଚିତ। ତା' ବୋଲି ପ୍ରାକୃତିକ ସମ୍ପଦର ପ୍ରକୃତ ଅର୍ଥରେ ସେ ଦେଶ ଦରିଦ୍ର ନୁହେଁ।

### କାଶ୍ମୀର ସହିତ ତୁଳନା

ଚମନ୍‌ଲାଲଜୀ କହୁଛନ୍ତି ଯେ କାଶ୍ମୀରଟି ଯେପରି ପ୍ରକୃତି ରାଣୀର ନିଜ ଉଦ୍ୟାନ ଜାପାନଟି ମଧ୍ୟ ସେହିଭଳି ତା'ର ନିଜ ଉଦ୍ୟାନ। ସମଗ୍ର ଜାପାନଟିକୁ କାଶ୍ମୀରର ଗୋଟିଏ ବୃହତ୍ତର ସଂସ୍କରଣ ବୋଲି କୁହାଯାଇ ପାରେ। ଏତିକି ତଫାତ୍ ଯେ କାଶ୍ମୀରଟି ସମୁଦ୍ରଠାରୁ ଢେର ଦୂରରେ। ଜାପାନଟି କିନ୍ତୁ ସମୁଦ୍ର ବକ୍ଷରେ ଗୋଟିଏ ଲମ୍ବା ଦ୍ୱୀପହାର—ଏହି ହାରରେ ବହୁ ସଂଖ୍ୟକ ଦ୍ୱୀପ ଗୁନ୍ଥା ହେଲା ଭଳି ରହିଛନ୍ତି। ଜାପାନର ପ୍ରାକୃତିକ ଦୃଶ୍ୟ ଅତି ମନମୁଗ୍ଧକର। ବହୁ ସଂଖ୍ୟକ ସ୍ୱାସ୍ଥ୍ୟ ନିବାସ, ପ୍ରସିଦ୍ଧ ଚିତ୍ରକଳା ପାଇଁ ପ୍ରସିଦ୍ଧ। ଜାପାନୀମାନେ ଅତି ଭଦ୍ରୋଚିତ ବ୍ୟବହାର କରନ୍ତି—ବହୁ ପୂର୍ବକାଳର ଶୀତକାଳ ଚଳି

ଆସିଛି । ବର୍ଷର ଯେ କୌଣସି ଋତୁରେ ସେ ଦେଶକୁ ଜଣେ ଛୁଟି ଉପଭୋଗ କରିବାକୁ ଯାଇପାରେ । ଆମେରିକାକୁ ଛାଡ଼ିଦେଲେ ପୃଥିବୀ ଭିତରେ ଜାପାନକୁହିଁ ଚମନ୍‌ଲାଲଜୀ ସବୁଠାରୁ ସୁନ୍ଦର ଦେଶ ବୋଲି ମତଦେଇ କହିଛନ୍ତି । ଯଦି କେବେ ଗୋଟାଏ ପୃଥିବୀ ସରକାର ଗଢ଼ାଯାଏ ତା'ର ହେଡ଼୍‌କ୍ୱାର୍ଟର ଜାପାନହିଁ ହେବା ଉଚିତ । ଠିକ୍ ତାଙ୍କରି ଭାଷାରେ କହିବାକୁ ଗଲେ—ପ୍ରତ୍ୟେକ ଦେଶର ସୌନ୍ଦର୍ଯ୍ୟ ଅଛି । ଜାପାନ ଦ୍ୱୀପପୁଞ୍ଜମାନଙ୍କ ଭିତରେ ଥିବା ସମୁଦ୍ର ଦୃଶ୍ୟକୁ କେହି ଟପିଯାଇ ପାରିବେ ନାହିଁ । ତା ସହିତ ହୁଏତ ସମକକ୍ଷ ହେବ କୋଭ ନିକଟରେ ଥିବା ଆଇରିସ୍ ସାଗର । ସୁଖ ଓ ଦୁଃଖ—ଉଭୟରେ ଜାପାନ ପ୍ରକୃତିରାଣୀର ଅତି ଗେହ୍ଲାପୁଅ । ଜାପାନକୁ ଭୂମିକମ୍ପ ଓ ତୋଫାନ୍ ଦିଆ ଯାଇଛି ·ସତ; କିନ୍ତୁ ତାର ଧୈର୍ଯ୍ୟ, ସହନଶୀଳତା, ବୀରତ୍ୱ ଓ ପରସ୍ପର ପ୍ରତି ସୌହାର୍ଦ୍ଦ୍ୟର ପରୀକ୍ଷା ପାଇଁ ସେ ଦୁଇଟି ଯେତେ ଯେପରି କଷଟି ପାଷାଣ । ଜାପାନ ଭୂଇଁ ଉପରକୁ ଯେତେ ସଂଖ୍ୟାରେ ଓ ଯେତେ ଭୀଷଣ ରୂପରେ ପ୍ରାକୃତିକ ବିପଦ ମାଡ଼ିଆସେ ଅନ୍ୟ କୌଣସି ଦେଶ ଉପରକୁ ସେତେ ଆସେ ନାହିଁ । କିନ୍ତୁ ବରାବର ଦେଖା ଯାଇଛି ଯେ ପ୍ରତ୍ୟେକ ପ୍ରାକୃତିକ ବିପଦରୁ ଉଦ୍ଧାର ପାଇଲା ବେଳକୁ ଜାପାନ ଅଧିକରୁ ଅଧିକ ଶକ୍ତିଶାଳୀ ହୋଇ ବାହାରିଛି । ଜାପାନକୁ ପ୍ରକୃତିର ଏ କି ·ବିଚିତ୍ର ଦାନ ମିଳିଛି ଯେ ସେ ଜାତିଟା ଆମ ଭାରତୀୟଙ୍କ ଭଳି କାନ୍ଦେ ନାହିଁ ।

## ଲୋଭ ଫଳରେ ଓଲଟା କ୍ଷତି

ଜାପାନର ଲୋକସଂଖ୍ୟା ଅତି ଦ୍ରୁତ ଗତିରେ ବଢ଼ିଲାରୁ ସେମାନେ ବିଚାରିଲେ ଯେ ଅଧିକରୁ ଅଧିକ ଦେଶ ଜୟ କରି ଦଖଲ କରିବେ ଓ ସେହି ଦେଶ ମାନଙ୍କରେ ବଳକା ଲୋକଙ୍କୁ ନେଇ ଥଇଥାନ କରିବେ । ଏ ଦିଗରେ ସେ ଜାତି ଯେତେ ଅଧିକ ଉଦ୍ୟମ କଲା ତାକୁ ସେହି ଅନୁପାତରେ ଦଣ୍ଡ ମିଳିଲା । ଜାପାନ ପୂର୍ବେ ଯାହାଥିଲା ଆଜି ତା'ଠାରୁ ଛୋଟ ହୋଇ ଯାଇଛି ।

ଗତ ମହାଯୁଦ୍ଧ ପରେ ଜାପାନ ତା'ର ଅଧୀନରେ ଥିବା ଭୂଇଁରୁ ଶହକେ ୪୭ ଭାଗ ହରାଇଛି । ଜାପାନ ତା'ର ତରବାରୀ ବଳରେ କୋରିଆ, ଫର୍ମୋଜା ଓ ମାଞ୍ଚୁରିଆ ଦଖଲ କରିଥିଲା । ସେ ସବୁ ତ ଗଲା, ତା' ସାଙ୍ଗରେ ତା'ର ନଜର କେତେଗୁଡ଼ାଏ ଅତି ଗୁରୁତ୍ୱପୂର୍ଣ୍ଣ ଦ୍ୱୀପ ମଧ୍ୟ ଚାଲିଗଲା । ଆଜି ଜାପାନର କ୍ଷେତ୍ରଫଳ ୧୪୭ ହଜାର ବର୍ଗ ମାଇଲ । ଆମ ଓଡ଼ିଶାର କ୍ଷେତ୍ରଫଳ ୬୦ ହଜାର ବର୍ଗ ମାଇଲ । ଅଢ଼େଇଟି ଓଡ଼ିଶା ସଙ୍ଗେ କ୍ଷେତ୍ରଫଳ ସମାନ ହେଲେ ମଧ୍ୟ ତା' ଭିତରେ ପ୍ରାୟ ନଅ କୋଟି ଲୋକ ଠୁଳି ହୋଇ ରହିଛନ୍ତି । ଏତେ ଜନଗହଳ ଦେଶ ପୃଥିବୀର କୌଣସି ଅଞ୍ଚଳରେ ନାହିଁ ।

ଜାପାନରେ କ'ଣ କ'ଣ ପ୍ରାକୃତିକ ସମ୍ପଦ ଅଛି ଟିକିଏ ଦେଖିବା । ପ୍ରଥମେ ସେ ଦେଶରେ କୃଷିର ଅବସ୍ଥା କଣ ଜାଣିବା ।

## ସବୁଠାରୁ ବଡ଼ ଗୁରୁତ୍ୱପୂର୍ଣ୍ଣ ଶିଳ୍ପ

ଆମେ ଜାପାନୀ ଚାଷ ପ୍ରଣାଳୀ ବିଷୟରେ ଏତେ କଥା ଶୁଣୁଛୁ ଓ ଭାରତର ଅନେକ ଅଞ୍ଚଳରେ ତା'ର ପ୍ରୟୋଗ ହେଉଛି । ସେ ଦେଶରେ ଚାଷକୁ ଶିଳ୍ପ ଭଳି ଯତ୍ନ ସହକାରେ କରନ୍ତି ବୋଲି ଜାପାନୀ ଚାଷ ପ୍ରଣାଳୀର ଏତେ ପ୍ରଶଂସା ହେଉଛି । ଆମେରିକା ବା ଋଷ କଥା ସ୍ୱତନ୍ତ୍ର । ସେ ଦେଶ ମାନଙ୍କରେ ଅପର୍ଯ୍ୟାପ୍ତ ଜମି ପଡ଼ି ରହିଛି କିନ୍ତୁ—ଜାପାନରେ ଲୋକଙ୍କ ପାଇଁ ମୁଣ୍ଡ ଗୁଞ୍ଜିବାକୁ ସୁଦ୍ଧା ସ୍ଥାନ ନାହିଁ । ତେଣୁ ସେ ଦୁଇ ଦେଶ ସହିତ ଜାପାନୀ ଚାଷର ତୁଳନା କରିବା ନାହିଁ ।

ସେମାନେ ଚାଷକୁ ସବୁଠାରୁ ବଳି ଗୁରୁତ୍ୱପୂର୍ଣ୍ଣ 'ଶିଳ୍ପ' ବୋଲି ଧରିଛନ୍ତି । ଜାତୀୟ ପୁଞ୍ଜିର ଶତକଡ଼ା ୪୦ ଭାଗରୁ ଅଧିକ ଏହିଥିରେ ଖଟା ଯାଇଛି । ସମଗ୍ର ଜନସଂଖ୍ୟାର ଶତକଡ଼ା ୪୭ ଭାଗ କୃଷିରୁ ସେମାନଙ୍କର ସମସ୍ତ ବା ଆଂଶିକ ଆୟ ପାଆନ୍ତି ।

କୃଷି ଉପରେ ନିର୍ଭର କରି ଚଳୁଥିବା ଲୋକଙ୍କ ସଂଖ୍ୟା ତୁଳନାରେ ଜମିର ପରିମାଣ ଖୁବ୍ କମ୍ । ଫଳରେ ଅଳ୍ପ ଅଳ୍ପ ଜମି

ନେଇ ଜଣେ ଜଣେ ଚାଷ କରୁଛନ୍ତି । ଆମେରିକା ଭଳି ହଜାର ହଜାର ଏକର ଜମି ଜଣ ଜଣକ ହାତରେ ନାହିଁ । ଯେତେ ଅଧିକ ପାରନ୍ତି ଖାଦ୍ୟ ଶସ୍ୟ ଉତ୍ପାଦନ ଉପରେ ସେମାନେ ବାଧ ହୋଇ ଜୋର ଦିଅନ୍ତି । ନଗଦ ପଇସା ପାଇଁ ଝୋଟ, ଧୂଆଁପତ୍ର ଭଳି ଫସଲରେ ବହୁତ ଜମି ଲଗାଇ ଦେଲେ ଜାପାନୀମାନେ ଖାଇବାକୁ ପାଇବେ ନାହିଁ ବୋଲି ବୁଝିଛନ୍ତି । ପଇସା ପାଇବା ପାଇଁ ଛୋଟ ଛୋଟ ଶିଳ୍ପ ଅଛି, —ଜମିରୁ ଖାଦ୍ୟ ସଂଗ୍ରହ ନ କରିବେ କାହିଁକ ?

ଧାନଚାଷ ହେଉଛି ସେ ଦେଶରେ ଚାଷ ଭିତରେ ରାଜା । ଜାତଟା ହେଲା ଭାତ ଓ ମାଛଖିଆ ଜାତି । ଭାତ ଓ ମାଛ ଯଦି ମିଳିଗଲା ସେ ଜାତର ପରମ ସନ୍ତୋଷ ଓ ସେମାନଙ୍କର ସ୍ୱାସ୍ଥ୍ୟ ଭଲ ରହେ ।

ଗଲା କୋଡ଼ିଏ ବର୍ଷ ଭିତରେ ଜପାନୀମାନେ ସେମାନଙ୍କ ଖାଦ୍ୟର ଶତକରା ୮୦ ରୁ ୮୫ ଭାଗ କୃଷିରୁହିଁ ପାଇ ଯାଇଛନ୍ତି ।

## ଚାଷର ଅର୍ଥନୀତିକ ଦିଗ

ଅଳ୍ପ ଜମିରୁ ବେଶୀ ଫସଲ ପାଇବାଟା ଜାପନୀ ମାନଙ୍କ ପକ୍ଷରେ କାହିଁକି ଜୀବନ ମରଣ ସମସ୍ୟା ସେଇଠାହିଁ ଦେଖିବା । ଦେଶରେ ଯେତେ ଜମି ଅଛି ସେଥି ଭିତରୁ କେବଳ ଶତକରା ୧୬ ଭାଗହିଁ ଚାଷ ପାଇଁ ବ୍ୟବହାର କରାଯାଏ । ଏହି ଷୋଳ ଭାଗଟା ହେଲା ୧୪୨୦୮୦୦୦ ଏକର । ୯ କୋଟି ହେଲେ ଲୋକଙ୍କୁ ଖୁଆଇବା ପାଇଁ କେବଳ ୧୪୨୦୮୦୦୦ ଏକର ଜମି ଜଣକ ପାଇଁ ୧୬ ଡିସିମିଲ୍ ମାତ୍ର ପଡୁଛି । ଏହି ୧୬ ଡିସିମିଲ୍ ଜମି ଜାପାନୀର ଖାଦ୍ୟର ଶତକରା ୮୦ ରୁ ୮୫ ଭାଗ ଯୋଗାଇ ଦେଉଛି । ସବୁତକ ଜମି ଯେ ଅଉଲ ଏ କଥା କେହି କହିବେ ନାହିଁ ।

ବରଂ ଆମେରିକାରେ ୬୮ ଲକ୍ଷ କୃଷିଫାର୍ମ ରହିଛି । ଏତେ-ଛୋଟ ଜାପାନରେ ପ୍ରାୟ ୫୬ ଲକ୍ଷ (୫୬୯୮୦୦୦) । ଗୋଟିଏ ଜାପାନୀ କୃଷିଫାର୍ମର ଏରିଆ ୨୪୯ ଡିସିମିଲ୍ !

# ସେଠି ବଗିଚା କରାହୁଏ—ଚାଷ ନୁହେଁ !

ଜାପାନରେ ଚାଷ ନ ହୋଇ ବଗିଚା କାମ ହୁଏ କହିଲେ ବରଂ ଠିକ୍ ହେବ । ବଗିଚାଟିରେ ଆମେ ଯେତକ ଯତ୍ନ ନେଉ, ସେମାନେ ୧୪୨ ଲକ୍ଷ ଏକର ଯାକ ଜମିର ସେତକ ଯତ୍ନ ନିଅନ୍ତି । ଆମେ ଧାନ କିଆରୀର ଯତ୍ନ ନେଇ ପାରିଲେ ଖୁବ୍ କଲୁ ବୋଲି ବଗୁରୁ ମାତ୍ର ସେମାନେ ଧାନ ଗଛର ଯତ୍ନ ନିଅନ୍ତି ।

ଚାଷର ଅଧିକ ଭାଗ ହାତରେ କରାଯାଏ—ଆମେରିକା ବା ରୁଷ ଭଳି କଳ ସାହାଯ୍ୟରେ ନୁହେଁ । ସେହି ପୁରୁଣା କାଳିଆ ଚାଷ ଉପକରଣ ତାଙ୍କ ଚାଷରେ ଖୁବ୍ ଭଲ କାମ ଦିଏ ।

ତୁଳନା କଲେ ଦେଖାଯିବ ଯେ ଜମିରୁ ଯଥେଷ୍ଟ ବେଶି ଉତ୍ପାଦନ ହେଉଛି ସିନା; ଯେତେଲୋକ କାମରେ ଲାଗିଛନ୍ତି ହିସାବ କଲେ ମଣିଷ ପିଛା କମ୍ ଉତ୍ପାଦନ କରୁଛନ୍ତି ।

ଅନେକ କ୍ଷେତରୁ ବର୍ଷକୁ ଦୁଇ ତିନିଥର ଫସଲ ଆଦାୟ କରା-ଯାଏ । ଜାପାନର କେନ୍ଦ୍ର ଓ ଦକ୍ଷିଣ ପଶ୍ଚିମ ଅଞ୍ଚଳରେ ହିଁ ଚାଷ ଭଲ ହୁଏ ।

# ଅଧିକା ଚାଷ ଜମି ବାହାର କରି ହେଉନାହିଁ

ଆବାଦ ହୋଇ ନ ଥିବା ଜମିକୁ ଆବାଦ କରି ଅନ୍ୟ ଦେଶରେ ଅଧିକା ଚାଷ ଜମି ବାହାର କରାଯାଉଛି । କିନ୍ତୁ ଜାପାନରେ ତା' ସହଜ ହେଉନାହିଁ । ଯୁଦ୍ଧ ପୂର୍ବରୁ ଯେତେ ଚାଷ ଜମି ଥିଲା ଯୁଦ୍ଧ ଭିତରେ ଫେର ସେଥିରୁ କିଛି କମିଗଲା କାରଣ ସାମରିକ ଓ ଶିଳ୍ପ କାର୍ଯ୍ୟରେ ଅଧିକା କିଛି ଜମି ଲାଗିଲା । ଯେତେକ ଚାଷ ଉପଯୋଗୀ ଜମିଥିଲା ତାକୁ ଆଉ ସେମାନେ ଏପର୍ଯ୍ୟନ୍ତ କ'ଣ ବାକି ରଖିଛନ୍ତି ? ଯଦି ବହୁତ ଟଙ୍କା ଖର୍ଚ୍ଚ କରାଯିବ, କଠିନ ପରିଶ୍ରମ ହେବ-

ଓ ଯଥେଷ୍ଟ ମାଲ୍ ମସଲା ଖର୍ଚ୍ଚ କରାଯିବ ତେବେ ଆଉ ୩୯ ଲକ୍ଷ ଏକର ପର୍ଯ୍ୟନ୍ତ ଚାଷ ଜମି ବାହାର କରାଯାଇ ପାରିବ ବୋଲି ହିସାବ କରାଯାଉଛି । ଆବାଦ କଲାପରେ ମଧ୍ଯ ଜମିତକ ଚାଷ ପାଇଁ ଖୁବ୍ ଉପଯୋଗୀ ହେବ ବୋଲି କୁହା ଯାଇ ପାରୁ ନାହିଁ ।

ବରଂ ଏ କଥା ଦେଖା ଯାଉଛି ଯେ ଆଜିକାଲି ବିଜ୍ଞାନ ଯେଉଁଭଳି ଉନ୍ନତ ଉପାୟମାନ ବାହାର କଲଣି ତାକୁ ପ୍ରୟୋଗ କରି ଜମିର ଶ୍ରେଣୀ ବିଭାଗ କରାଗଲେ, ଜଳସେଚନର ଆହୁରି ଭଲ ବ୍ୟବସ୍ଥା ହେଲେ, ଜଳ ନିଷ୍କାସନର ବ୍ୟବସ୍ଥା କରି ପାରିଲେ ଓ ବତାସ ଓ ବନ୍ୟାରୁ ଜମିକୁ ରକ୍ଷା କରି ପାରିଲେ ଯେତିକି ଫସଲ ଏକରକରୁ ଆମଦାନି ହେଉଛି ତା'ଠାରୁ ଅଧିକ ଉତ୍ପାଦନ କରିହେବ ।

## ଛ'ଟି ଖାଦ୍ୟ ଫସଲ ପ୍ରଧାନ

ଜାପାନୀମାନେ ବଞ୍ଚିରହି କାମ କରିବା ପାଇଁ ଯେତିକି ପରିମାଣରେ ଖାଦ୍ୟ ଦରକାର ଅର୍ଥାତ୍ ଯେତିକି କାଲୋରୀ ଲୋଡ଼ା ସେଥିର ଶତକଡ଼ା ୮୫ ରୁ ୯୦ ଭାଗ ଜାପାନରେ ଉତ୍ପାଦନ କରାଯାଉ-ଥିବା ଛ'ଗୋଟି ଫସଲରୁ ମିଳିଯାଏ । ସେ ଛ'ଟି ହେଉଛି— ଚାଉଳ, ଗହମ, ବାର୍ଲି, ନେକେଡ଼୍ ବାର୍ଲି, ଧଳା ଆଳୁ ଓ ମିଠା ଆଳୁ ।

ସବୁଠାରୁ ବେଶି ଚାଷ ହୁଏ ଧାନ । ସମଗ୍ର ଚାଷ ଜମିର ଶତକଡ଼ା ୫୩ ଭାଗରେ ଧାନ ହୁଏ । ଶତକଡ଼ା ୯୬ ଭାଗ ଧାନ ନୀଚୁ ପାଣିମଡ଼ା ଜମିରେ ହୁଏ । ଖୁବ୍ ଗରମ ଓ ପ୍ରବଳ ବର୍ଷା ହେଉଥିବା ପାଗକୁ ଧାନ ଫସଲ ଯେମିତି ସମ୍ଭାଳିଯାଏ ଅନ୍ୟ ଫସଲ ସେମିତି ପାରନ୍ତି ନାହିଁ ।

ଧାନ ତଳକୁ ଗହମର ଗୁରୁତ୍ୱ ରହିଥିଲେ ମଧ୍ଯ ସେ ଫସଲଟା ପାଗ ବାଛେ । ଖରାଦିନେ ଉତ୍ତର ଅଞ୍ଚଳରେ ହୁଏ ଓ ଶୀତଦିନେ ଦକ୍ଷିଣ ପଶ୍ଚିମ ତଥା କେନ୍ଦ୍ର ଅଞ୍ଚଳରେ ହୁଏ ।

ଉତ୍ତର ଅଞ୍ଚଳରେ ଗହମ ଚାଷ ହୁଏ ।

# ଗୋରୁ ମଇଁଷି ପାଳିବା ଉପରେ ଜୋର ଦିଆ ଯାଏ ନାହିଁ

ଜାପାନରେ ଗୋରୁ ମଇଁଷି ପାଳିବା ଉପରେ ଜୋର ଦିଆ ଯାଏ ନାହିଁ । ତା'ର କାରଣ ହେଉଛି ଏକରେ ଜମିରେ ଧାନ ଗହମ କଲେ ଯେତିକ ପରିମାଣରେ ଜୀବନ ଧାରଣ ଉପଯୋଗୀ ଖାଦ୍ୟ ମିଳିବ ସେତିକ ପରିମାଣରେ ଖାଦ୍ୟ ଗୋରୁ ମଇଁଷିଙ୍କଠାରୁ ପାଇବାକୁ ହେଲେ ଗୁରି ଛ' ଏକର ଜମି ସେମାନଙ୍କୁ ପାଳିବା ପାଇଁ କୃଷରୁ କାଢି ସ୍ୱତନ୍ତ୍ର ଭାବରେ ରଖିବାକୁ ପଡ଼ିବ । ତେଣୁ ଗୋରୁ ମଇଁଷି ରଖିବାଟା ଜାପାନୀଙ୍କ ପକ୍ଷରେ ଗୋଟିଏ ବିଳାସ ଭଳି ହେଇଯାନ୍ତା । ସେ ବିଳାସ ପଛରେ ଧାଇଁଲେ ଏଣେ ଏମାନେ ଉପବାସ ରହିବେ ।

ତା'ହେଲେ ସେମାନେ ପ୍ରୋଟିନ ପାଉଛନ୍ତି କେଉଁ ସୂତ୍ରରୁ ! ଖାଦ୍ୟରେ ପ୍ରୋଟିନ୍ ବା ଛେନା ଜାତୀୟ ଖାଦ୍ୟ ନ ରହିଲେ ତ ଚଳିବ ନାହିଁ,—ସ୍ୱାସ୍ଥ୍ୟ ହାନି ଘଟିବ— ଜାପାନୀମାନଙ୍କ ସ୍ୱାସ୍ଥ୍ୟ ଭଲ ରହୁଛି କିପରି ? ସେମାନେ ମାଛ ଉପରେ ଓ ଉଦ୍‌ଭିଦ ଉପରେ ନିର୍ଭର କରୁଛନ୍ତି ପ୍ରୋଟିନ୍ ପାଇବା ପାଇଁ ।

## କୃଷି ବିଷୟରେ ଗବେଷଣା

ଶିଳ୍ପ ପ୍ରଧାନ ଦେଶ ଜାପାନ ନିଜର ଅସ୍ତିତ୍ୱ ବଜାୟ ରଖିବା ପାଇଁ କୃଷି ଉପରେ ଏତେ ନିର୍ଭର କରୁଥିବାରୁ କୃଷି ବିଷୟରେ ବରାବର ଗବେଷଣା ଚାଲିଥାଏ । କୃଷି ଗବେଷଣା ପାଇଁ ଆକାରରେ ଓଡ଼ିଶାର ଅଢ଼େଇ ଗୁଣ ରାଜ୍ୟଟିରେ ୪୨୪ ଟା ଗବେଷଣାଗାର ରହିଛି । ବିଶ୍ୱବିଦ୍ୟାଳୟ, କୃଷି କଲେଜ, ଘରୋଇ ଅନୁଷ୍ଠାନ ଓ କର୍ପୋରେସନ୍‌ମାନଙ୍କରେ ବରାବର ଗବେଷଣା ଚାଲିଛି । ଛୋଟ ଛୋଟ ପରୀକ୍ଷାଗାର ମାନଙ୍କରେ ଆଧୁନିକ ଯନ୍ତ୍ରପାତି ରହିଛି ଓ ସେଠାରେ ଯେଉଁ ମାନେ ରହିଛନ୍ତି ସେମାନେ ପରୀକ୍ଷା ବିଦ୍ୟା ଭଲ ଭାବରେ ହାସଲ କରିଛନ୍ତି ।

ଏହି ଗବେଷଣାଗାର ମାନଙ୍କରେ ଯେଉଁ ତଥ୍ୟ ମିଳେ ସେ ତଥ୍ୟକୁ କୃଷରେ ପ୍ରୟୋଗ କରି ଚମତ୍କାର ଫଳ ମିଳେ । ଏକରେ ଜମିରେ



ଜାପାନ ମନ୍ଦିର

ଯେତେ ସିଲ୍କ ୧୮୯୦ରେ ଆମଦାନୀ ହେଉଥିଲା ୫୦ ବର୍ଷ ପରେ ୧୯୪୦ରେ ତା'ର ଶ୍ରରିଗୁଣ ଅଧିକା ଆମଦାନୀ କରାଯାଇ ପାରିଲା । ଧାନ ଗହମ ବାଲି—ମଧ୍ୟ ସେହିଭଳି ଅଧିକା ଉତ୍ପାଦନ କରାଯାଇଛି ।

## ମାଛ

ଦ୍ୱିତୀୟ ମହାଯୁଦ୍ଧ ପୂର୍ବରୁ ଜାପାନୀ ମାନେ ଥିଲେ ପୃଥିବୀର ସବୁଠାରୁ ବଡ଼ ମାଛଧରା ଜାତି । ବର୍ଷକୁ ନିଜ ଦେଶର ଜଳଭାଗରୁ ୨୫ ଲକ୍ଷରୁ ୩୫ ଲକ୍ଷ ମେଟ୍ରିକଟନ ମାଛ ଧରୁଥିଲେ । ନିଜ ଅଧୀନରେ ଥିବା ଉପନିବେଶମାନଙ୍କରୁ ଓ ବିଦେଶରୁ ୨୦ରୁ ୩୫ ଲକ୍ଷ ଟନ ମାଛ ଧରି ଆଣୁଥିଲେ । ସମଗ୍ର ପୃଥିବୀରେ ସମୁଦ୍ରରୁ ଯେତେ ମାଛଧରା ଯାଉଥିଲା କେବଳ ଜାପାନରେହିଁ ତା'ର ଶ୍ରରି ଭାଗରୁ ଭାଗେ ହେଉଥିଲା । ଏହି କାମରେ ପୂରା ବା ଆଂଶିକ ସମୟ ଦେଇ କାମ କରୁଥିବା ୧୫ ଲକ୍ଷ ଲୋକ ଲାଗି ରହିଥିଲେ । ମାଛ ଧରିବା ପାଇଁ ୩ଲକ୍ଷ ୫୫ ହଜାର ବୋଟ ବ୍ୟବହାର କରାଯାଉ ଥିଲା । ସେଥି ଭିତରୁ ୭୫୦୦୦ ରେ ଇଞ୍ଜିନ ଲାଗିଥିଲା । ପୃଥିବୀର ଶ୍ରରିଆଡ଼କୁ ଯାଇ ସେମାନେ ମାଛ ଧରୁଥିଲେ ।

ଏଇଥିରୁ ବେଶ୍ ଅନୁମାନ କରାଯାଇ ପାରେ ଜାପାନୀମାନଙ୍କ ସ୍ୱାସ୍ଥ୍ୟ ରକ୍ଷା ପାଇଁ ଯେତିକି ପ୍ରୋଟିନ୍ ଦରକାର ସେଥିରେ ଗୋଟାଏ ଖୁବ୍ ବଡ଼ ଅଂଶ ମାଛରୁ ବା ଶୁଖୁଆରୁହିଁ ମିଳିଯାଉ ଥିଲା । ସେମାନେ ନିଜେ ଖାଇ ସାରିଲା ପରେ ଯେତିକି ମତ୍ସ୍ୟଜାତ ଦ୍ରବ୍ୟ ବଳୁଥିଲା ତାକୁ ବିଦେଶକୁ ରପ୍ତାନୀ କରି ସେମାନେ ଦେଶପାଇଁ କିଛି ପଇସା ବି ରୋଜଗାର କରୁଥିଲେ ।

## ମାଛଧରା ଉପରେ ଏତେ ଗୁରୁତ୍ୱ କାହିଁକି ?

ଲକ୍ଷ ଲକ୍ଷ ଲୋକ ଲକ୍ଷ ଲକ୍ଷ ବୋଟ ସାହାଯ୍ୟରେ ପୃଥିବୀର ସମୁଦ୍ର ଯାକ ମାଛଧରିବା ପାଇଁ କାହିଁକି ମଜ୍ଜୁଥାନ୍ତି ବୋଲି ହୁଏତ ମନରେ ପ୍ରଶ୍ନ ଉଠିବ । ତା'ର କେତେ ଗୁଡ଼ାଏ ଉତ୍ତର ହୋଇ ପାରେ । ଗୋଟାଏ ଉତ୍ତର ହେଲା ଦେଶଟାରେ ଲୋକ ଭିଡ଼ିହୋଇ ରହିଛନ୍ତି

—ସେମାନଙ୍କୁ ଖାଦ୍ୟ ଯୋଗାଇ ହେଉନାହିଁ । ଅନ୍ୟ ଦେଶରୁ ଯାଇ ତ ସେମାନେ ଫସଲ ନେଇ ଆସି ପାରିବେ ନାହିଁ । ବିଶାଳ ସମୁଦ୍ର ଖାଦ୍ୟ ଭଣ୍ଡାର ଧରି ପଡ଼ିରହିଛି । ବାହୁବଳରେ, ବୁଦ୍ଧି ବଳରେ ଖାଦ୍ୟ ସଂଗ୍ରହ କଲେହିଁ ହେଲା ।

ଦ୍ୱିତୀୟରେ ଦେଶର ଉପକୂଳକୁ ସମୁଦ୍ର କରତଦାନ୍ତ ଭଳି କରି ପକାଇଛି । ଏହି କାରଣରୁ ଓ ଗୁଡ଼ାଏ ଦ୍ୱୀପ ଥିବାରୁ ମୋଟ ଉପ-କୂଳଟା କେତେ ବେଶି ଅନୁମାନ କରା ଯାଇପାରେ । ଏଭଳି ଦୀର୍ଘ ଉପକୂଳରୁ ମାଛ ଧରିବା ସହଜ ।

ଦେଶର ଲୋକେ ବେଶି ସଂଖ୍ୟାରେ ରହିଛନ୍ତି ଉପକୂଳ ଅଞ୍ଚଳରେ । ସମୁଦ୍ର ସହିତ ସେମାନଙ୍କ ପରିଚୟ ସେମାନଙ୍କୁ ସମୁଦ୍ର ମୁହାଁ କରି ଦେଇଛି ଓ ସମୁଦ୍ର ଉପରେ ଖାଦ୍ୟ ପାଇଁ ନିର୍ଭର କରିବା ମନୋବୃତ୍ତି ମଧ୍ୟ ଜନ୍ମାଇ ଦେଇଛି ।

ଜାପାନ ନିକଟରେ ସମୁଦ୍ରରେ ଉଷ୍ଣ ଓ ଶୀତଳ ସମୁଦ୍ର ସ୍ରୋତର ମିଳନ ହେଉଥିବାରୁ ମାଛ ଧରିବାକୁ ଖୁବ୍ ସୁବିଧା ହୁଏ ।

## ପୃଥିବୀ ଖେଦୁ ଅଛି

ଜାପାନକୁ ଘେରି ରହିଥିବା ସମୁଦ୍ରରେ ତ ମାଛ ଧରିବାର କଥା, ଧରନ୍ତି—ପୂର୍ବପଟେ ପ୍ରଶାନ୍ତ ମହାସାଗରର ଗଭୀର ଜଳରେ, ଉତ୍ତର ସମୁଦ୍ରରେ ଓ ବେରିଙ୍ଗ୍ ପ୍ରଣାଳୀରେ [ କଙ୍କଡ଼ା ଓ ସାମନ ମାଛ ]; ପୂର୍ବ ଚୀନ ଓ ପୀତ ସାଗରରେ; ଆଟଲାଣ୍ଟିକ ମହାସାଗରରେ [ ତିମି ଧରିବା ପାଇଁ ]; ଆଲାସ୍କା ଉପକୂଳରେ [ ଟ୍ରେଟମାଛ ଧରିବା ପାଇଁ ]; ବ୍ରିଟିଶ୍ କଲମ୍ବିଆ, ମେକ୍ସିକୋ, କେନ୍ଦ୍ର ଆମେରିକା, ଦକ୍ଷିଣ-ଆମେରିକା, ଅଷ୍ଟ୍ରେଲିଆ, ଭାରତ ମହାସାଗର ଓ ପଶ୍ଚିମ ଭୂମଣ୍ଡଳରେ ଜାପାନି ମାଛଧରାଳୀ ସମୁଦ୍ର ପାଣିକୁ ଓଲଟ ପାଲଟ କରୁଥାଏ ମାଛଧରିବା ପାଇଁ । ଜାପାନର କେତେଗୁଡ଼ାଏ ବନ୍ଦର ତ ମାଛଧରା ଜାହାଜର ଆଶ୍ରୟସ୍ଥଳ ବୋଲି ପ୍ରସିଦ୍ଧ ।

କେତେ ଶହ ଜାତର ମାଛ ଜାପାନୀମାନେ ଖାଆନ୍ତି । ସାର୍ଡ଼ିନ୍, ହେରିଙ୍ଗ, କଡ୍, ସାମନଠାରୁ ଆରମ୍ଭ କରି ତିମି ପର୍ଯ୍ୟନ୍ତ ବହୁ ଜଳଚର ଜୀବଙ୍କ ମାଂସ ଜାପାନୀ ଗର୍ଭରେ ପଡ଼େ ।

ସମୁଦ୍ରରୁ ମାଛ ଧରନ୍ତି ଓ ବିଶାଳ ସମୁଦ୍ର ପଡ଼ିରହିଛି ବୋଲି ଯେ ଜାପାନୀମାନେ ଦେଶ ଭିତରେ ମଧୁର ମାଛ ଚାଷ କରନ୍ତି ନାହିଁ ଏଭଳି ଭାବିବା ଠିକ୍ ନୁହେଁ । ପୋଖରୀ ଭିତରେ ଭଲ ମାଛ ମଧ ସେମାନେ ପାଳନ୍ତି ଓ ମାଛ ଚାଷ ଉପରେ ଖୁବ୍ ଜୋର ଦିଅନ୍ତି । ମାଛଚାଷ ଶିକ୍ଷା ଦେବା ପାଇଁ ୨ଟା କଲେଜ, ୩୨ଟା ସ୍କୁଲ, ବିଶ୍ୱବିଦ୍ୟାଳୟ ମାନଙ୍କରେ ତିନିଟା ବିଭାଗ ଖୋଲାଯାଇଛି ଓ ୧୪୩ଟା ରିସର୍ଚ୍ଚ ବା ଗବେଷଣା ଷ୍ଟେସନ ରହିଛି ।

## ଜଙ୍ଗଲ

ଜାପାନ ତା'ର ନିଜ ଜଙ୍ଗଲରୁ କାଠ ଓ ବାଉଁଶ ପାଇଯାଏ । କାଗଜ ତିଆରି ପାଇଁ ପଲ୍ପ ବା ମଣ୍ଡ, ଜାଳେଣୀ କାଠ, ଘର ତିଆରିପାଇଁ କାଠ ତ ମିଳେ—ଏହା ବାଦେ ଜଙ୍ଗଲରୁ ମିଳୁଥିବା କାଠରେ ଜାପାନର ଅନେକ କିଛି କାମ ହୁଏ । ଜଳସ୍ରୋତକୁ ନିୟନ୍ତ୍ରଣ କରିବା କାମ କାଠର । ଏହାରି ସାହାଯ୍ୟରେ ସାଂଘାତିକ ବନ୍ୟା କବଳରୁ ଦେଶକୁ ରକ୍ଷା କରାଯାଏ । ମୃତ୍ତିକା ସଂରକ୍ଷଣ କରିବାର ଦାୟିତ୍ୱ ନେଇଛି ଜାପାନର ଜଙ୍ଗଲ ।

## ୧୫୩ ପ୍ରକାରର ବାଉଁଶ

ନାନା ପ୍ରକାରର ଭଲ ମନ୍ଦ କାଠ ତ ଜଙ୍ଗଲରେ ରହିଛି— ତା' ସାଙ୍ଗକୁ ୧୫୩ ପ୍ରକାରର ବାଉଁଶ ଚିହ୍ନା ଗଲାଣି ।

ଜଙ୍ଗଲ ଗୁଡ଼ିକୁ ନାନା ଶ୍ରେଣୀରେ ବିଭକ୍ତ କରା ଯାଇଛି । ଦେଶର ସୌନ୍ଦର୍ଯ୍ୟ ବଢ଼ାଇବା ପାଇଁ, ଅନ୍ୟ କେତେ ପ୍ରକାର

ଆବଶ୍ୟକତା ପୂରଣ କରିବା ପାଇଁ, ମୃତ୍ତିକା ସଂରକ୍ଷଣ ପାଇଁ, ବନ୍ୟା ନିବାରଣ ପାଇଁ, ସ୍ରୋତ ନିୟନ୍ତ୍ରଣ ପାଇଁ, ସ୍ରୋତକୁ ଅବ୍ୟାହତ ରଖିବା ପାଇଁ, ଯେଉଁ ଜଙ୍ଗଲର ସଂରକ୍ଷଣ ଦରକାର ସେଗୁଡ଼ିକୁ ସ୍ପେଶାଲ ପର୍ପସ ଫରେଷ୍ଟ ବା ସ୍ୱତନ୍ତ୍ର ଉଦ୍ଦେଶ୍ୟ ପାଇଁ ରଖାଯାଇଥିବା ଜଙ୍ଗଲ ବୋଲି କୁହାଯାଏ । ୧ କୋଟି ୭୦ ଲକ୍ଷ ଏକର ଜଙ୍ଗଲ ଏଇଥିପାଇଁ ରଖା ଯାଇଛି । ଏଥିଭିତରୁ ଗୋଟାଏ ଅଂଶରେ ଗଛ ଲଗାଇ ଜଙ୍ଗଲ ତିଆରି କରା ଯାଇଛି । ଜାପାନର ସମୁଦାୟ ଜଙ୍ଗଲ ୩ କୋଟି ୫୭ ଲକ୍ଷ ୫୮ ହଜାର ।

## କାଠରେ ଘର

ସେ ଦେଶରେ ଭୂମିକମ୍ପ ହେଉଥିବାରୁ ଇଟା ପଥରରେ ଘର କରିବା ନିରାପଦ ନୁହେଁ । ମୋଟ ଘର ସଂଖ୍ୟା ୧୬୦୦୦୦୦୦ (ଏକକୋଟି ଷାଠିଏ ଲକ୍ଷ) ଭିତରୁ ଯୁଦ୍ଧ ବେଳେ ୩୦ ଲକ୍ଷ ଘର ଭାଙ୍ଗି ଯାଇଥିଲା । ବର୍ଷକୁ ପ୍ରାୟ ୪ ଲକ୍ଷ ଘର ଭାଙ୍ଗି ଯାଉଛି ବା ଖରାପ ହୋଇଯାଉଛି । ଏହିସବୁ ଘର ତିଆରି ଓ ମରାମତି ପାଇଁ କେତେ କାଠ ଦରକାର ଅନୁମାନ କରା ଯାଇ ପାରେ । କେବଳ ଏହି ଗୋଟିକ ବ୍ୟବହାର ପାଇଁ ତ ଏତେ କାଠ ଦରକାର ହେଉଛି—ଅନ୍ୟ କଥା ବେଶ ଧରି ନିଆ ଯାଇ ପାରେ ।

## କରତ କଳର ଗୁରୁତ୍ୱ

ଏଭଳି ଏକ ଦେଶରେ କରତ କଳର ଗୁରୁତ୍ୱ କେତେ ବୁଝିବା କଷ୍ଟ ନୁହେଁ । ସମଗ୍ର ଦେଶରେ ୧୮୮୨୦ ଟା କରତକଳ ଅଛି । ସେଥିରୁ ୧୬ ହଜାରଟାରେ କାମ ହେଉଥାଏ । ୩ଲକ୍ଷ ୧୦ ହଜାର ଅଶ୍ୱ ଶକ୍ତି ବା ହର୍ଷ ପାୱାର ବିଶିଷ୍ଟ ଏହି କରତକଳ-ମାନଙ୍କରେ ୩୭୫ କୋଟି ବୋର୍ଡ଼ଫିଟ୍ କାଠ ଚିରାଯାଏ । ୧୬୦୦୦୦ ଲୋକ ଏହି ଶିଳ୍ପରେ କାମ କରନ୍ତି । ସବୁ କଳଯାକ କାମ ନ କରି କେତେକ ଅକାମୀ ଅବସ୍ଥାରେ ରହିଯିବାର କାରଣ ହେଉଛି ସେ

ଗୁଡ଼ିକ ହୁଏ ତ ମରମତ ହେଉଥାନ୍ତି ବା ବିଜୁଳି ପାୱାର ଯୋଗାଇବାରେ ବ୍ୟାଘାତ ଘଟେ ।

## ପ୍ଲାଇ ଉଡ୍ ବ୍ୟବସ୍ଥା

ଜାପାନରେ କେବଳ ଯେ କାଠରୁ ପ୍ଲାଇଉଡ୍ ତିଆରି ହୁଏ ତା' ନୁହେଁ—ବାଉଁଶରୁ ମଧ୍ୟ ହୁଏ । ଯୁଦ୍ଧ ପୂର୍ବରୁ ବର୍ଷକୁ ୪୭କୋଟି ବର୍ଗଫୁଟ ପ୍ଲାଇଉଡ୍ ତିଆରି ହେଉଥିଲା । ଯୁଦ୍ଧପରେ କମି ଯାଇଛି ସତ—କିନ୍ତୁ ଯେଉଁ ଆମେରିକା ସୈନ୍ୟ ସେଠାରେ 'ଦଖଲକାରୀ ସେନା ' ବା ଅକୁପେଶନ ଫୋର୍ସ ହିସାବରେ ରହିଛନ୍ତି ସେମାନଙ୍କର ଏ କାଠ ଖୁବ୍ ଦରକାର ହେଉଛି । ସେହିମାନଙ୍କ ଆବଶ୍ୟକତା ପୂରଣ ପାଇଁ ମଧ୍ୟ ଯଥେଷ୍ଟ ପ୍ଲାଇଉଡ୍ ତିଆରି ହୋଇ ପାରୁନାହିଁ । ଯୁଦ୍ଧରେ ତ ପ୍ରାୟ ଏକ ଚତୁର୍ଥାଂଶ କାରଖାନା ଭାଙ୍ଗି ଯାଇଥିଲା—ଯେତିକ ଅଛି ସେତିକ ପାଇଁ ଯଥେଷ୍ଟ କଞ୍ଚାମାଲ ଯୋଗାଇ ହେଉ ନ ଥିବାରୁ ଯୁଦ୍ଧ ପୂର୍ବରୁ ଯେତେ ଉତ୍ପାଦନ ହେଉଥିଲା ତା'ର ଅଧା ସୁଦ୍ଧା ବର୍ତ୍ତମାନ ହେଉନାହିଁ ।

ଜଙ୍ଗଲ ସଂରକ୍ଷଣ କି ଉପାୟରେ କରାଯାଇ ପାରିବ ଓ ଜଙ୍ଗଲ ଜାତଦ୍ରବ୍ୟର ଉପଯୋଗ କପରି ହେବ ସେ ବିଷୟରେ ଗବେଷଣା ଚଳାଇବା ପାଇଁ ବହୁ ଅନୁଷ୍ଠାନ ରହିଛି ।

## ଖଣିଜ ସଂପଦରେ ଦରିଦ୍ର

ହତଭାଗ୍ୟ ଜାପାନକୁ ପ୍ରକୃତ ଖଣିଜ ସମ୍ପଦରେ ଦରିଦ୍ର କରି କାହିଁକି ଯେ ଗଢ଼ିଦେଇଛି ବୁଝି ହୁଏ ନାହିଁ । ଅଳ୍ପ କେତୋଟି ଖଣିଜ ଦ୍ରବ୍ୟ ଛାଡ଼ିଦେଲେ ପ୍ରାୟ ସବୁ ଗୁଡ଼ିକରେ ଜାପାନ ନିଜର ଅଭାବ ସୁଦ୍ଧା ମେଣ୍ଟାଇ ପାରେ ନାହିଁ—ବାହାରକୁ ରପ୍ତାନୀ କରିବା କଥା ଉଠୁଛି ବା କାହିଁକି ?

କରୁ ଜପାନ ବାହାରୁ କଞ୍ଚାମାଲ୍ ମଗାଇ ଲୁହା ଇତ୍ୟାଦି ଧାତୁଦ୍ରବ୍ୟରେ ଅନେକ ଜିନିଷ ତିଆରି କରି ନିଜର ଅଭାବ ମେଣ୍ଟାଉ-ଥିଲା ଓ ବାହାରକୁ ରପ୍ତାନି ମଧ୍ୟ କରୁଥିଲା ।

ପେଟ୍ରୋଲ୍, ଲୁହା, ଶିଶା, ମାଙ୍ଗାନିଜ, ନିକେଲ୍, କୋବାଲ୍ଟ, ଆଣ୍ଟିମନି, ପାର୍, ଭାନାଡ଼ିୟମ୍, ଟିଟାନିୟମ୍, ଆଜବେଷ୍ଟସ୍, ଗ୍ରାଫାଇଟ ଟିଣ ଓ ଅନ୍ୟ ଧାତୁଦ୍ରବ୍ୟ ଅଳ୍ପ ଅଳ୍ପ ମିଳେ । ଫସ୍‌ଫେଟ୍, ପୋଟାସ୍ ଓ ପାହାଡ଼ଲୁଣ ଆଦୌ ମିଳେ ନାହିଁ । ଜାପାନର ଯେତେ ଲୁଣ ଦରକାର ସେଥିର କେବଳ ଅଧେ ଜାପାନରେ ତିଆରି ହୁଏ । ଫସ୍‌ଫେଟ୍ ଓ ପଟାସ୍ ଅଭାବଟା ଜାପାନକୁ ଭାରି ବାଧେ— କାରଣ କୃତ୍ରିମ ସାର ତିଆରି ପାଇଁ ଏହି ଦୁଇଟି ପଦାର୍ଥ ଖୁବ୍ ଦରକାର ।

## ଯଥେଷ୍ଟ ମିଳେ

ତମ୍ବା, ଜିଙ୍କ୍, ସୁନା, ରୁପା, ଆର୍ସେନିକ୍ ଓ କ୍ରୋମାଇଟ୍ ଯଥେଷ୍ଟ ପରିମାଣରେ ମିଳେ ।

## ଗନ୍ଧକ ବେଶି ଅଛି

ଯଥେଷ୍ଟ କୋଇଲା ଜାପାନ ମାଟି ତଳେ ମହଜୁଦ ଅଛି । ହିସାବ କରା ଯାଇଛି ଯେ ୧୬,୦୦୦,୦୦୦,୦୦୦ ( ୧୬ ଶହ କୋଟି ) ମେଟ୍ରିକ୍‌ଟନ କୋଇଲା ରହିଛି ।

ସଲଫର ଓ ପାଇରାଇଟ୍ ମଧ୍ୟ ଯଥେଷ୍ଟ ରହିଛି । ୧୯୪୫ରେ ୩୮ ଲକ୍ଷ ଟନ ସଲଫ୍ୟୁରିକ୍ ଏସିଡ଼୍ ତିଆରି କରା ଯାଇଥିଲା । ଯୁଦ୍ଧ ବେଳେ ଜାପାନ ବର୍ଷକୁ ୪୦ ଲକ୍ଷ ମେଟ୍ରିକ୍‌ଟନ ସିମେଣ୍ଟ ତିଆରି କରୁଥିଲା ।

## ଜଳସଂପଦ

ଜଳସମ୍ପଦରେ ଜାପାନ ଖୁବ ଧନୀ । ଭୂଇଁ ଉପରେ ଥିବା ପାଣିକୁ ଯେତେଦୂର ସମ୍ଭବ କାମରେ ଲଗାଇବା ବିଷୟରେ ଜାପାନ

ମାନେ ଖୁବ୍ ସଫଳ ହୋଇଛନ୍ତି । ନଦୀଗୁଡ଼ାକ ଲମ୍ବା ଲମ୍ବା ନୁହନ୍ତି । ପ୍ରଚୁର ବର୍ଷା ହେଉଥିବାରୁ ଗୁଡ଼ାଏ ପାଣି ସେହି ସବୁ ନଦୀରେ ସମୁଦ୍ରକୁ ବହିଯାଏ । ଜାପାନର ଶକ୍ତି ଅଛି ୧୦୦ ଲକ୍ଷ କିଲୋୱାଟ୍ ବିଦୁତ୍ ଶକ୍ତି ଉତ୍ପାଦନ କରିବା ପାଇଁ । ବଡ଼ ବଡ଼ ଜଳ ବିଦ୍ୟୁତ୍ ଯୋଜନାମାନ କରା ଯାଇଛି । ଟୋମାରୁମୁରାଠାରେ ଶିନାନୋ ନଦୀରେ ସବୁଠାରୁ ବଡ଼ ଜଳବିଦ୍ୟୁତ୍ କାରଖାନା ବା ହାଇଡ୍ରୋ ଇଲେକ୍ଟ୍ରିକ ପ୍ଲାଣ୍ଟ ବସା ଯାଇଛି । ଅନେକ ଗୁଡ଼ିଏ ଛୋଟ ଛୋଟ ଜଳସେଚନ ଯୋଜନା ମଧ୍ୟ ହୋଇଛି ।

## ଲୁହା କାରଖାନା

୧୯୪୩ ରେ ୫୮ ଲକ୍ଷ ମେଟ୍ରିକଟନ ଇସ୍ପାତ ତିଆରି କରା ଯାଇଥିଲା । ବିଦେଶରୁ ଭଲ ଲୁହାପିଣ୍ଡ ଓ କଞ୍ଚାଲୁହା ଆମଦାନୀ କରିବାକୁ ପଡ଼ିଥିଲା ।

ଆଲୁମିନିୟମ ମଧ୍ୟ ବହୁ ପରିମାଣରେ ତିଆରି କରାଯାଏ ।

## ଜାପାନ କହିଲା "ସେ ଧାରଣା ଭ୍ରମ"

ଜାପାନର ଖଣିଜ ସଂପଦ ଓ ଅନ୍ୟ ପ୍ରାକୃତିକ ସଂପଦର ହିସାବ ଦେଇ ସାରି ଜାପାନୀ କୁଟୀର ଶିଳ୍ପ ବିଷୟରେ ସବୁଠାରୁ ବେଶି ଅଧ୍ୟୟନ କରିଥିବା ଓ ନିଜ ଆଖିରେ ଦେଖି ଅଭିଜ୍ଞତା ହାସଲ କରିଥିବା ଶ୍ରୀ ଚମନ୍‌ଲାଲ୍ ଲେଖିଛନ୍ତି—ଆଗରୁ କହି ଆସୁଛୁ ଓ ଆଜି ମଧ୍ୟ ଆମ ମୁଣ୍ଡରେ ସେହି କଥା ବସା ବାନ୍ଧି ଯାଇଛି ଯେ ଯେଉଁ ଅଞ୍ଚଳରେ ଯେଉଁ କଞ୍ଚାମାଲ୍ ମିଳେ ତାକୁହିଁ କାମରେ ଲଗାଇ ଜିନିଷ ତିଆରି କଲେ ଯାଇ ପୋଷାଇବ । ଜାପାନ କିନ୍ତୁ ସ୍ପଷ୍ଟ କହି ଦେଲା ଯେ ସେ ଧାରଣା ଭୁଲ୍ । ଜାପାନର ନିଜର ନାହିଁ ବୋଲି ତୁଳା, ଟିଣ, ରବର, ଲୁହା ଓ ଆହୁରି ଶହେ ପ୍ରକାରର କଞ୍ଚାମାଲ୍ ଜାପାନକୁ ବିଦେଶରୁ ଆମଦାନୀ ହୋଇ ଆସେ । ଜାପାନର ବିଶ୍ୱ ବିଖ୍ୟାତ ବସ୍ତ୍ର

ଶିଳ୍ପ, ବୋତାମ, ବ୍ରସ, ରବର ଦ୍ରବ୍ୟ ତିଆରି ପାଇଁ ଜାପାନ ବାହାରୁ କଞ୍ଚାମାଲ ମଗାଇବାକୁ ବାଧ ହେଉଛି । ବାହାର ଦେଶର ଦୟା ଉପରେ ନିର୍ଭର କରିଛି କହିଲେ ଚଳେ । ଜାପାନର ମାଛଧରା ପୃଥିବୀ ପ୍ରସିଦ୍ଧ । ସେହି କାମରେ ଲଗୁଥିବା ଜାଲ ତିଆରି ପାଇଁ ବାହାରୁହିଁ କଞ୍ଚାମାଲ ଆସେ । ବାହାରୁ ରସାୟନିକ ଦ୍ରବ୍ୟ ନ ଆସିଲେ ଅନେକ ଗୁଡ଼ିଏ ଗୃହ ଶିଳ୍ପ ମୋଟେ ଚାଲି ପାରିବ ନାହିଁ । ଜାପାନରେ ଯଦିଓ ଯଥେଷ୍ଟ ବାଉଁଶ ଅଛି ଓ ସେଥିରୁ ୧୪୦୦ ପ୍ରକାରର ଜିନିଷ ତିଆରି କରି ପୃଥିବୀ ବଜାରକୁ ପଠା ଯାଉଛି ସେ ଜିନିଷ ତିଆରି ପାଇଁ ଅନ୍ୟ କଞ୍ଚାମାଲ ଦରକାର । ଜାପାନୀ କାଗଜ ଫୁଲ ଓ ପଙ୍ଖା, ସେଲୁଲଏଡ଼୍ ପାନିଆ, ଖେଳଣା ପୃଥିବୀର କେଉଁ ବଜାରର କେଉଁ ରାସ୍ତାରେ ବା ଭାରତର କେଉଁ ହାଟରେ ବା ବିକ୍ରି ନ ହେଉଛି । ବାହାରୁ କେତେକ କଞ୍ଚାମାଲ ନ ଆସିଲେ ତ ସେ ଗୁଡ଼ିକ ତିଆରି ହୋଇ ପାରନ୍ତା ନାହିଁ । ଜାପାନୀ ଖେଳଣା ଓ ପାନିଆ ପ୍ରଭୃତି ଯେଉଁ ସେଲୁଲଏଡ଼ରେ ତିଆରି ହେଉଛି ସେହି ସେଲୁଲଏଡ଼ ଶିଳ୍ପ କଥା ଧରୁନାହିଁ । ତାକୁ ତିଆରି କରିବା ପାଇଁ ପ୍ରଧାନ କଞ୍ଚାମାଲ ହେଉଛି ଛିଣ୍ଡାଲୁଗା ବା ମଇଳା ଲୁଗା, ନାଇଟ୍ରିକ୍ ଏସିଡ୍ ଓ କାଂଫର । ବାହାରୁ ମଇଳା ଲୁଗା ଓ ଛିଣ୍ଡା କପଡ଼ା ଆମଦାନି କରି ନିଅନ୍ତି । କାଂଫରରେ ଜାପାନ ସ୍ୱାବଲମ୍ବୀ ଥିଲେ ମଧ୍ୟ ଏବେ ଫର୍ମୁଜାରୁ ନେବାକୁ ପଡ଼ୁଛି ।

ତେବେ କାହିଁକି କହିବ ଯେ କଞ୍ଚାମାଲ ନ ଥିଲେ କୌଣସି ଶିଳ୍ପର ଭବିଷ୍ୟତ୍ ନାହିଁ ?

## ଶିଳ୍ପର କାଉଁରୀକାଠି ବିଜୁଳି

ଯେଉଁ ଦେଶ ହାତରେ ବିଜୁଳିଶକ୍ତି ପଡ଼ିଯାଉଛି ସେ ଦେଶ ଶିଳ୍ପ କ୍ଷେତ୍ରରେ ଅସମ୍ଭବ ପ୍ରକାରରେ ଅଗ୍ରଗତି କରି ଯାଉଛି । ଜାତି ହାତରେ ବିଜୁଳି ଶକ୍ତି ହିଁ ସବୁଠାରୁ ବଳି ଶକ୍ତିଶାଳୀ ଅସ୍ତ୍ର । କାଉଁରୀକାଠି ସାହାଯ୍ୟରେ ଯାଦୁକର ଅସମ୍ଭବ ସମ୍ଭବ କଲା ବୋଲି ଦେଖାଇ ଦିଏ । ବିଜୁଳି ସ୍ପର୍ଶରେ ପ୍ରକୃତରେ ଅସମ୍ଭବ ସମ୍ଭବ ହେଉଛି । ଆମେରିକାର

ବଡ଼ ବଡ଼ ବିଦ୍ୟୁତ ଶକ୍ତି କାରଖାନା ବା ଯୋଜନା ନ ଥିଲେ ପୃଥିବୀର ସବୁ ଦେଶକୁ ସେ ଆଜି ଶିଳ୍ପ ଉତ୍ପାଦନରେ ଟପି ଯାଇ ନ ଥା'ନ୍ତା । ଭାରତରେ ଆଜି ଯେ ଶହ ଶହ କୋଟି ଟଙ୍କା ଖର୍ଚ୍ଚ କରି ଜଳ ବିଦ୍ୟୁତ ଯୋଜନାମାନ କରାଯାଉଛି ତା'ର କାରଣ ହେଉଛି ଏ ଦେଶରେ ଯେଉଁ ଅସରନ୍ତି ଖଣିଜ ସମ୍ପଦ ଓ କଞ୍ଚାମାଲ ପଡ଼ିରହିଛି ବିଜୁଳିଶକ୍ତି ନ ମିଳିଲେ ତା'ର ଉପଯୋଗ କେବେ ହେଲେ ହୋଇ ପାରିବ ନାହିଁ ।

ବହୁବର୍ଷ ତଳେ ଜାପାନକୁ ଏହି ସତ୍ୟଟା ଜାଜ୍ଜ୍ୱଲ ହୋଇ ଦେଖା ଯାଇଥିଲା ଓ ଦେଶଟାର ଗୃହି ଆଡ଼କୁ ବିଜୁଳିଶକ୍ତି ଯୋଗାଇ ଦେବା ଉପରେହିଁ ସବୁଠାରୁ ବେଶି ଜୋର ଦିଆ ଯାଇଥିଲା । ସେହି ଉଦ୍ୟମ ସେହି ଯୋଜନାର ଫଳ କ'ଣ ହୋଇଛି ? ଫଳ ହୋଇଛି ଆଜି ଜାପାନର ଶତକଡ଼ା ୯୦ ଘରେ ବିଜୁଳିବତୀ—ସବୁଘରେ ଯାଇ ବିଜୁଳିଶକ୍ତି ରହି ଯାଇଛି । ଜାପାନର ପ୍ରତ୍ୟେକ "ଘର-କାରଖାନା" ବିଜୁଳିଶକ୍ତି ଉପରେହିଁ ନିର୍ଭର କରି ରହିଛି ।

ଜାପାନର ଶିଳ୍ପ ବିଜୁଳିଶକ୍ତି ଉପରେ କେତେ ନିର୍ଭର କରୁଛି ତାହା ତଳ ହିସାବହିଁ କହି ଦେବ । ବିଜୁଳିଶକ୍ତି ବାହାରେ ଅନ୍ୟ ଶକ୍ତିରେ ତ ପୁଣି କାରଖାନା ଚାଲିଛି-କିନ୍ତୁ ବିଜୁଳି କେଉଁ ସ୍ଥାନ ଅଧିକାର କଲଣି ଦେଖା ଯାଉ । ୧୯୦୯ ରେ କାରଖାନା ଚଳାଇବା ପାଇଁ ଯେତେ ଶକ୍ତି ବା ପାୱାର ଦରକାର ହେଉଥିଲା ତା'ର କେବଳ ଶତକଡ଼ା ୧୩ ଭାଗହିଁ ବିଜୁଳିଥିଲା—ଆଜି ୮୨ ଭାଗ:—

## ଶତକଡ଼ା କେତେ ଭାଗ ବିଜୁଳି ଶକ୍ତିରେ ଚାଲେ

| ଶିଳ୍ପ | ୧୯୦୯ | — ୧୯୩୩ |
|---|---|---|
| ୧—ବସ୍ତ୍ର ଶିଳ୍ପ | ୯.୮ | ୮୦.୮ |
| ୨—ଧାତୁ | ୩୭.୨ | ୭୭.୯ |
| ୩—ମେସିନ୍ ଓ ଯନ୍ତ୍ରପାତି | ୩୩.୮ | ୯୦.୪ |

| | | |
|---|---|---|
| ୪—ସେରମିକ୍ ଶିଳ୍ପ | ୨୦·୩ | ୨୨·୨ |
| ୫—କେମିକାଲ୍ ଶିଳ୍ପ | ୯·୨ | ୮୭·୭ |
| ୬—କାଠ କରତବା ଆଦି | ୫·୯ | ୬୮·୨ |
| ୭—ଛପା ଓ ବହିବନ୍ଧା | ୩୯·୧ | ୯୮·୬ |
| ୮—ଖାଦ୍ୟ ଓ ପାନୀୟ | ୯·୦ | ୮୮·୩ |
| ୯—ଅନ୍ୟାନ୍ୟ ଶିଳ୍ପ | ୪·୭ | ୯୫·୯ |
| ମୋଟ | ୧୩·୩ | ୮୨·୦ |

କିଭଳି ଗତିରେ ବିଜୁଳି ଶକ୍ତିର ପ୍ରୟୋଗ ହେଲା ବେଶ ବୁଝି ହୋଇ ଯାଉଛି । ୧୯୦୯ ରେ କେବଳ ୧୩ ଭାଗହିଁ ବିଜୁଳି ଶକ୍ତିରେ ଚାଲୁଥିଲା—ଦଶବର୍ଷ ପରେ ୧୯୧୯ କୁ ୫୯ ଭାଗ ହୋଇଗଲା ଓ ୧୯୩୩ କୁ ୮୨ ଭାଗ । ଏଇଟା କିଛି କମ୍ ଆଶ୍ଚର୍ଯ୍ୟର କଥା ନୁହେଁ । ଆଜି ବିଜ୍ଞାନ ବହୁ ଦୂର ଆଗେଇ ଗଲାଣି । ଆଜି କେତେକ ଦେଶରେ ଏହାଠାରୁ ଅଧିକ ବେଗରେ ହୁଏତ ବିଜୁଳିଶକ୍ତିର ଉତ୍ପାଦନ ଓ ପ୍ରୟୋଗ ହୋଇ ଯାଇପାରେ । କିନ୍ତୁ ୨୩ ବର୍ଷ ତଳେ ମଧ୍ୟ ଜାପାନ କିଭଳି ଆଗେଇ ଯାଇ ପାରିଥିଲା ସେଇଟା ଦେଖି ବିସ୍ମିତ ହେବାର କଥା ।

## ପାଣିହିଁ ଶକ୍ତିର ମା'

ଏ ଯୁଗରେ ପାଣିହିଁ ବିଜୁଳିଶକ୍ତିର ମା' । ଆଗରୁ କୁହାଯାଇଛି ଯେ ଜଳ ବିଦ୍ୟୁତ ଯୋଜନା ଦ୍ୱାରା ହିଁ ଏତେ ବିଜୁଳିଶକ୍ତି ଉତ୍ପାଦନ କରାଯାଉଛି । ବର୍ଷର ସବୁ ସମୟରେ ନଦୀମାନଙ୍କରେ ଯଥେଷ୍ଟ ଜଳ ନ ଥାଏ । ଯେତେ ଭଣ୍ଡାର କରି ରଖିଲେ ମଧ୍ୟ ବର୍ଷର ସବୁ ଋତୁରେ ସମାନଭାବରେ ପାଣିଗୁଡ଼ି ସମାନ ରେଟରେ ବିଜୁଳିଶକ୍ତି ଉତ୍ପାଦନ କରି ହୁଏ ନାହିଁ । ସେତିକି ବେଳେ—ଠିକଏ ଅଭାବ ବେଳେ ଷ୍ଟିମ୍ ଦ୍ୱାରାହିଁ କାମ ଚଳାଇ ନିଆଯାଏ । ଜଳ ବିଦ୍ୟୁତ ବାହାରେ ଅନ୍ୟ ସୂତ୍ରରୁ ଉତ୍ପାଦନ କରା ଯାଉଥିବା ବିଦ୍ୟୁତଶକ୍ତି ମଧ୍ୟ ଶିଳ୍ପକୁ ସହାଯ୍ୟ

କରିବା ପାଇଁ ବ୍ୟବସ୍ଥା ହୋଇଥାଏ । ଜାପାନରେ ଯଦିଓ ଯଥେଷ୍ଟ କୋଇଲା ଅଛି ସେ କୋଇଲାକୁ ପ୍ରଥମ ଶ୍ରେଣୀର ବୋଲି କୁହାଯାଇ ପାରିବ ନାହିଁ । ଫଳରେ କୋଇଲା ଅନୁପାତରେ ଯେତେ ଷ୍ଟିମ ଉତ୍ପାଦନ କରାଯାଇ ପାରୁଥିବ ବୋଲି ଅନୁମାନ କରା ଯାଉଛି ସେତେ ଷ୍ଟିମ ଉତ୍ପାଦନ ସହଜ ହୁଏ ନାହିଁ ।

ଯାହାହେଉ ପାଣିରୁ ମୋଟ ବିଜୁଳିଶକ୍ତିର ଶତକରା ୬୯ ରୁ ୮୬ ଭାଗ ମିଳି ଯାଉ ଥିବାରୁ ଅନେକ ଅସୁବିଧା ଦୂର ହୋଇ ଯାଇଛି ଓ ପ୍ରଥମ ଶ୍ରେଣୀର କୋଇଲା ନାହିଁ ବୋଲି ଜାପାନୀମାନଙ୍କର ଯେତେ ଦୁଃଖ କରିବାର କଥା ସେତେ ଦୁଃଖ ହୁଏ ନାହିଁ ।

## ବିଜୁଳି କିଣିବା ଶକ୍ତି

ଗୋଟିଏ କଥା ଏଠାରେ କହିଲେ ଅପ୍ରାସଙ୍ଗିକ ହେଲା ବୋଲି ଧରାଯିବ ନାହିଁ । ଜାପାନରେ ଶତକରା ୯୦ ଘରେ ତ ବିଜୁଳିଶକ୍ତି ପହୁଞ୍ଚି ଯାଇଛି । କିନ୍ତୁ ଗାଁ ଗହଳରେ ଅନେକ ଘରେ ଗୋଟିଏ କି ଦୁଇଟି ବିଜୁଳିବତୀ ଜାଳିବା ବ୍ୟତୀତ ଅନ୍ୟ କାମରେ ଏହି ଶକ୍ତିକୁ ଲଗା ଯାଉ ନାହିଁ । ତା'ର କାରଣ ହେଉଛି ବିଜୁଳିଶକ୍ତି କିଣିବା ଶକ୍ତି ଲୋକର ଥିଲେ ଯିନା ସେ ମନଇଚ୍ଛା ବ୍ୟବହାର କରି ପାରିବ । ତା' ହୋଇ ପାରୁ ନାହିଁ । ସେମିତି ଆମ ଦେଶରେ ଆଜିକାଲି ମଫସଲକୁ ବିଜୁଳିଶକ୍ତି ଯିବା ଆରମ୍ଭ ହେଲାଣି । କିନ୍ତୁ ଲୋକଙ୍କର ଆର୍ଥିକ ଅବସ୍ଥାର ଉନ୍ନତି ଯେତିକି ବେଗରେ ହେଉଥିବ ବିଜୁଳିଶକ୍ତି ଖର୍ଚ୍ଚ ସେତିକି ବେଗରେ ବଢ଼ୁଥିବ ।

## ଶିଳ୍ପ ଖର୍ଚ୍ଚ—ଘର ଖର୍ଚ୍ଚ

ଛୋଟ ଛୋଟ ଶିଳ୍ପରେ, କୃଷିରେ ବିଜୁଳିଶକ୍ତି ଲଗାଇଲେ ଲୋକେ ପଇସା ପାଉଛନ୍ତି । ତେଣୁ ଯେତେବେଳେ ସୁଯୋଗ ଅଛି

ସେମାନେ ବିଜୁଳି ଶକ୍ତିର ପୂର୍ଣ୍ଣ ସଦୁପଯୋଗୀ କରୁଛନ୍ତି । ଘରେ ଖର୍ଚ୍ଚା କମାଇ ସେମାନେ ଶିଳ୍ପରେ ଲଗାଉଛନ୍ତି ।

## କୃଷିରେ କାହିଁକି ଲଗା ଯାଉଛି

କୃଷି କାମରେ ବିଜୁଳି ଶକ୍ତିର ପ୍ରୟୋଗ ଆଡ଼େ ଜାପାନୀ କୃଷୀ ମନ ବଳାଇବାର କେତୋଟି କାରଣ ଅଛି ।

ଚମନ୍‌ଲାଲ୍‌ଜୀ ଗୋଟିଏ ଗାଁର ବର୍ଣ୍ଣନାକରି ଲେଖିଛନ୍ତି ଯେ ସେ ଗାଁର ଲୋକେ ଅଧିକରୁ ଅଧିକ ବିଜୁଳି ଶକ୍ତି କୃଷିକାମରେ ଲଗାଇବାର କାରଣ ହେଉଛି ଗୋରୁଙ୍କୁ ଖାଇବାକୁ ଦେଇ ପାରିବେ ନାହିଁ ବୋଲି ରଖି ପାରୁନାହାନ୍ତି, ଗୋରୁଙ୍କ କାମ ମେସିନ କରୁଛି ଓ ମେସିନ ଚାଲୁଛି ବିଜୁଳିରେ । ଗାଁର ମାଟିତଳୁ—ଗଭୀରରୁ ପାଣି ଉଠାଇଲେ ସେ ପାଣିରେ ଆମୋନିଆ ଅଂଶ ଯଥେଷ୍ଟ ପରିମାଣରେ ଅଛି—ଫଳରେ ଆମୋନିଆ ସାରର ଅଭାବ ଅନେକ ପରିମାଣରେ ମେଣ୍ଟି ଯାଉଛି ।

ଗାଁ ବାଲା ଯେତେବେଳେ ମେସିନ—କୃଷିର ଉପାଦେୟତା ବୁଝିଗଲେ ସେମାନେ କୃଷିକାମରେ ଅଧିକରୁ ଅଧିକ ମେସିନ ବ୍ୟବହାର କରିଗଲେ ।

## ଯୁଦ୍ଧର ଭୀଷଣ କୁଫଳ

ଦ୍ୱିତୀୟ ମହାଯୁଦ୍ଧ ପୂର୍ବରୁ ଶସ୍ତା ବିଜୁଳିଶକ୍ତି ପାଇବା ଫଳରେ ଜାପାନୀମାନେ ନିଜ ଦେଶକୁ ସ୍ୱର୍ଗ ପାଲଟେଇବା କାମରେ ଲାଗିପଡ଼ିଥିଲେ । କିନ୍ତୁ ଯୁଦ୍ଧପରେ ଅବସ୍ଥାଟା ବଦଳି ଯାଇଛି । ଆମେରିକାର ସୈନ୍ୟମାନେ ସେ ଦେଶରେ ରହିଛନ୍ତି ଓ ଜାପାନୀ ମାନେ ନିଜ ଦେଶର ଷୋଳଅଣା ମାଲିକ ବୋଲି କୁହା ଯାଇ ପାରିବ ନାହିଁ । ଆଜି ଜାପାନରେ ବିଜୁଳିଶକ୍ତିର ପ୍ରାଚୁର୍ଯ୍ୟ ନାହିଁ । ଯେତେ

ଦରକାର ତା'ର ଶତକଡ଼ା ୩୦ ଭାଗ ଅଭାବ ପଡ଼ୁଛି । ଏହି ଅଭାବ ଯୋଗୁଁ ଶିଳ୍ପଜାତ ଦ୍ରବ୍ୟର ଉତ୍ପାଦନ ମଧ୍ୟ କମିଯାଇଛି ।

କିନ୍ତୁ ଅବସ୍ଥା ସୁଧୁରି ଆସୁଛି । ବିଦେଶୀ ସୈନ୍ୟ ସେ ଦେଶରେ ଥିବା ଯୋଗୁଁ ଯେଉଁ ସବୁ କଟକଣା ରହିଛି ସେଗୁଡ଼ିକ କ୍ରମେ ଦୂର ହୋଇଯିବ ଓ ଜାପାନୀ ଶିଳ୍ପ—ବଡ଼ ଓ ଛୋଟ ଉଭୟ—ପୁଣି ବିଜୁଳିଶକ୍ତି ସାହାଯ୍ୟରେ ମୁଣ୍ଡ ଟେକି ଉଠିବ ।

## କ୍ଷୁଦ୍ରଶିଳ୍ପ ଯୋଜନା

ଜାପାନରୁ ଫେରି ଚମନ୍‌ଲାଲ ଜୀ ଯେଉଁ ରିପୋର୍ଟ ଦେଇଥିଲେ ସେ ରିପୋର୍ଟରେ ସେ ଲେଖିଛନ୍ତି— ଜାପାନରୁ ବିଦାୟ ନେଇ ଆସିଲା ବେଳେ ସେ ଦେଶର ବାଣିଜ୍ୟ ବୋର୍ଡ଼ର ସଭାପତି ଶ୍ରୀ ନାଗି ସମ୍ରାଟଙ୍କ ଭାଇ ରାଜକୁମାର ଟାକାମାତ୍ସୁଙ୍କ ଘରେ ହୋଇଥିବା ବିଦାୟଭୋଜିରେ ମୋତେ କହିଲେ— "ଆମ ଜାତୀୟ ଅର୍ଥନୀତିର ମେରୁଦଣ୍ଡ ହେଉଛି କ୍ଷୁଦ୍ରଶିଳ୍ପ । ବୋର୍ଡ଼ ଅଫ୍ ଟ୍ରେଡ଼ର ସଭାପତି ହିସାବରେ ମୁଁ ଆପଣଙ୍କୁ ଅନୁରୋଧ କରୁଛି ଯେ ଆପଣ ଭାରତ ସରକାରଙ୍କ କୁହନ୍ତୁ ଯେ ବଡ଼ ବଡ଼ ଶିଳ୍ପ ଯୋଜନା ସଙ୍ଗେ ସଙ୍ଗେ ଗୁଡ଼ିଏ କ୍ଷୁଦ୍ର ଶିଳ୍ପର ପ୍ରତିଷ୍ଠା ପାଇଁ ବ୍ୟବସ୍ଥା କରନ୍ତୁ । ଆପଣଙ୍କ ଦେଶରେ ପ୍ରାକୃତିକ ସମ୍ପଦ ଭରି ରହିଛି । କ୍ଷୁଦ୍ର ଶିଳ୍ପ ପ୍ରତିଷ୍ଠା ଯୋଜନାଟି ଯେଉଁଳି କାର୍ଯ୍ୟକାରୀ ହୋଇ ପାରିବ ତା' ମଧ୍ୟ ଦେଖିବାର କଥା । କେବଳ ସେହି ଉପାୟରେ ହିଁ ଆପଣ ଦେଶର ଅର୍ଥନୈତିକ ସୌଧର ମଜବୁତ ମୂଳଦୁଆ ପକାଇ ପାରିବେ ।"

ଶ୍ରୀ ନାଗିଙ୍କର ଏହି ଅନୁରୋଧ ବା ଉପଦେଶ ଉଦ୍ଧାର କରି ଚମନ୍‌ଲାଲ୍‌ଜୀ ଲେଖିଛନ୍ତି ଯେ ଜାପାନକୁ ତାଙ୍କ ଷଷ୍ଠ ଥର ଗସ୍ତରେ ସେ ଯାହା ଦେଖିଲେ ସେଥିରେ ତାଙ୍କର ହୃଦ୍‌ବୋଧ ହୋଇଗଲା ଯେ ନାଗିଙ୍କ ଉପଦେଶ ଭିତରେ ସତ୍ୟ ପୂରି ରହିଛି ଓ ସେହି ଉପଦେଶ ଅନୁସାରେ ଚାଲିଲେ ଆମ ଦେଶର ନିଶ୍ଚୟ ଉପକାର ହେବ ।

# କି ପ୍ରକାରର ଶିଳ୍ପ

ଲୁଗାବୁଣା, ଉଲ୍‌ବୁଣା, ମାଛଧରା ଜାଲବୁଣା, ତଉଲିଆ, ଟେବୁଲ୍‌କ୍ଲଥ, ଧଳା କୁମ୍ଭ ଆଦି କ୍ଷୁଦ୍ରଶିଳ୍ପ ଭାଗରେ ପଡ଼ୁଛି ।

କୃଷି ଉପକରଣ ଓ ଯନ୍ତ୍ରପାତି, ସିଭିଲ ଇଂଜିନିୟରିଂ ଇନଷ୍ଟ୍ରୁମେଣ୍ଟ, ହାତକରତ, ଫାଇଲ୍, କଳକବଜା ଓ ଭିନ୍ନ ଭିନ୍ନ ପାର୍ଟ, ଇଲେକଟ୍ରିକ୍ କମ୍ୟୁନିକେସନ—କ୍ଷୁଦ୍ରଶିଳ୍ପ ଜରିଆରେ ହୁଏ ।

କାଷ୍ଟିଙ୍ଗ୍, ଗିଲ୍‌ଡିଙ୍ଗ, ତାରଜାଲି, ନାନାପ୍ରକାର ଇସ୍ପାତ ଓ ଲୁହା ଜିନିଷ ତିଆରି ଦାୟିତ୍ୱ ମଧ୍ୟ ଏହି ଶିଳ୍ପ ନେଇଛି ।

କାଚ ଜିନିଷ, ଏନାମଲ ବାସନ, ପ୍ରୋସିଲେନ ବାସନ, ଜାପାନରେ ଘର ଛାତ ପାଇଁ ବ୍ୟବହୃତ ହେଉଥିବା ଗୋଟାଏ ପ୍ରକାର ଟାଇଲ, ଇଟା, ଆଜବେଷ୍ଟସ ଓ ଟାଇଲ ଉତ୍ପାଦନ ବଡ଼ କାରଖାନାରେ ନ ହୋଇ ଏହି ଉପାୟରେ ହୁଏ ।

ବାଇସିକଲ, ଛୋଟ ଛୋଟ ଧାତୁ ତିଆରି ଦ୍ରବ୍ୟ, ଲୁହା ଓ ଅନ୍ୟ ଧାତୁରେ ତିଆରି ନାନା ପ୍ରକାରର ଦ୍ରବ୍ୟ (ଇଉରୋପୀୟ ଷ୍ଟାଇଲର) ପ୍ଲେଟ୍, ପଟ, କେଟ୍‌ଲ୍, ଷ୍ଟୋଭ, ଓ୍ୱାଲପମ୍ପ, ଦାଢ଼ୁଆ ହତିଆର, ଛୁରି, ରବର ତିଆରି ନାନା ଜିନିଷ, ଚମଡ଼ା ଜିନିଷ, କାଠ ଆସବାବ ଷ୍ଟେସନାରୀ ଓ ଅଫିସ୍ ବ୍ୟବହାର ପାଇଁ ଅନେକ ପ୍ରକାରର ପଦାର୍ଥ, ଖେଳଣା, ଚମଡ଼ାବ୍ୟାଗ, ସେଲୁଲୟେଡ ଜିନିଷ, ଛତା, ବାଉଁଶ ପଦାର୍ଥ ଇତ୍ୟାଦି କ୍ଷୁଦ୍ର ଶିଳ୍ପର ସୀମାଭିତରେ ଥା'ନ୍ତି ।

# କ୍ଷୁଦ୍ର ଶିଳ୍ପର ସଂଜ୍ଞା

ଜାପାନରେ କ୍ଷୁଦ୍ର ଶିଳ୍ପର ସଂଜ୍ଞା କଣ କରାଯାଇଛି ଦେଖାଯାଉ—

କାରଖାନାଟିରେ ଯଦି ଅଳ୍ପ ସଂଖ୍ୟକ ଲୋକ କାମ କରୁଥିବେ, ଯେଉଁ ଲୋକ କାରଖାନାଟି ଚଳାଉଛି ସେ ଯଦି ନିଜେ ତା'ର ପରି-

ଚ୍ଛଳନାର ଭାର ନେଇଛି, ମାଲିକାନା ଓ ପରିଚ୍ଛଳନା ଯଦି ଜଣେ ଲୋକ ହାତରେ ଥାଏ, ଶିଳ୍ପରେ ଲଗାଯାଇଥିବା ପୁଂଜି, ଉତ୍ପାଦନ ଦ୍ରବ୍ୟ ଓ ଶକ୍ତି ଯଦି ଅଳ୍ପ ହୋଇ ଥାଏ, ଶିଳ୍ପର ଯେଉଁ ସୀମାବଦ୍ଧ ଥାଏ. ଅନ୍ୟ ବଡ଼ ବଡ଼ କର୍ପୋରେଶନ ସହିତ ପୁଂଜି ଖଟାଇବା ଚୁକ୍ତି ନ ହୋଇ ଥାଏ ତେବେ ତାକୁ ଛୋଟ ଶିଳ୍ପ ବୋଲି କୁହାଯିବ । ଏହିଭଳି ଶିଳ୍ପର ପରିଚ୍ଛଳନା ଓ ସୁବ୍ୟବସ୍ଥା ପାଇଁ ବାହାର ସାହାଯ୍ୟ ଓ ପରାମର୍ଶ ଲୋଡ଼ା । କାରଣ ବଡ଼ ବଡ଼ଶିଳ୍ପ କାରଖାନାର ଦକ୍ଷତା ଏମାନଙ୍କର ନ ଥାଏ ।

## କ୍ଷୁଦ୍ର ଶିଳ୍ପ ବୋର୍ଡ଼

ଏହି ସବୁ କ୍ଷୁଦ୍ର ଶିଳ୍ପର ଉନ୍ନତି ହେଉଛି କି ନାହିଁ ଦେଖିବା ଉଦ୍ଦେଶ୍ୟରେ, ସେଗୁଡ଼ିକୁ ସାହାଯ୍ୟ କରିବା ପାଇଁ, ସେମାନଙ୍କର ସୁବିଧା ଅସୁବିଧା ବୁଝିବା ପାଇଁ ଗୋଟିଏ କ୍ଷୁଦ୍ର ଶିଳ୍ପ ବୋର୍ଡ଼ ଅଛି । ଆମ ଦେଶରେ ଆଜିକାଲି "ଗ୍ରାମ୍ୟ ଓ କୁଟୀର ଶିଳ୍ପ" ବୋର୍ଡ଼ ଗଢ଼ା ହେଲାଣି । 'ସେହି ନିଖିଳ ଭାରତ ଗ୍ରାମ୍ୟ ଓ କୁଟୀର ଶିଳ୍ପ ବୋର୍ଡ଼ର' ପ୍ରଥମ ବୈଠକ ଅଳ୍ପ କେତେ ବର୍ଷ ତଳେ କଟକଠାରେ ବସିଥିଲା ଓ ସେଥିରେ ଚମନ୍‌ଲାଲ୍ ଯୋଗ ଦେଇଥିଲେ । ସେହି ବୋର୍ଡ଼ର ପ୍ରାଦେଶିକ ଶାଖାମାନ ଗଢ଼ା ଯାଇଛି । ଆମ ଓଡ଼ିଶା ବୋର୍ଡ଼ର ହେଡ଼ ଅଫିସ ଭୁବନେଶ୍ୱରଠାରେ । ସେମାନେ କ୍ଷୁଦ୍ରଶିଳ୍ପରେ ଆଗ୍ରହୀ ଥିବା ଲୋକଙ୍କୁ ସାହାଯ୍ୟ ପରାମର୍ଶ ଦେଉଛନ୍ତି ।

## ଆଠକୋଟି ସହଯୋଗୀଙ୍କର ପରିବାରଟିଏ

ସମଗ୍ର ଜାପାନଟାକୁ ଆଠକୋଟି ସହଯୋଗୀଙ୍କର ଗୋଟିଏ ପରିବାର ବୋଲି କହିଲେ ଭୁଲ ହେବ ନାହିଁ ।

କୋ-ଅପରେଟିଭ ବା ସମବାୟ ପ୍ରଥା ଜାପାନ ଭୂଇଁରେ ଜନ୍ମ ହୋଇ ନ ଥିଲା । ଜର୍ମାନୀରୁ ଜାପାନ କୋ-ଅପରେଟିଭ ସିଷ୍ଟମ ନେଇ ଆସିଲା ଓ ଦେଖାଗଲା ଯେ ଜାପାନ ଭୂଇଁ ତା' ପାଇଁ ଅତି ଉର୍ବର

ଯୋଗ୍ୟ । ଜାପାନୀ ଲୋକଙ୍କ ଚରିତ୍ର ଚାଲି ଚଳନ ସଂସ୍କୃତି ଭିତରେ ସହଯୋଗ ପ୍ରଥା ଏକାବେଳକେ ମିଶି କରି ରହିଛି ।

ଜାପାନରେ ସହଯୋଗ ପ୍ରଥା ବିଷୟରେ ଆମେ ଚମନ୍‌ଲାଲ୍‌ଜୀଙ୍କ ଠାରୁ ଶୁଣିବା—ମୁଁ ପୃଥିବୀର ଚାରିଆଡ଼େ ଆଠଥର ବୁଲି ଆସିଛି । ଧନୀ ଦରିଦ୍ର, ଶିଳ୍ପପତି ଶ୍ରମିକ, ଦୋକାନୀ, ସରକାରୀ କର୍ମଚାରୀ—ସମସ୍ତଙ୍କର ଭିତରେ ଜାପାନରେ ଯେପରି ସହଯୋଗ ବା କୋ-ଅପରେଶନ ରହିଛି ପୃଥିବୀର ଅନ୍ୟ କୌଣସି ଦେଶରେ ସେପରି ନାହିଁ ବୋଲି ଦେଖିଲି । ପ୍ରତ୍ୟେକ ଅଫିସ ଗୋଟାଏ ନା ଗୋଟାଏ ପ୍ରକାରର କୋଅପରେଟିଭ ଅନୁଷ୍ଠାନ ଗଢ଼ିଛି । ଉତ୍ସବ-ଦିନମାନଙ୍କରେ ମଉଜ ମଜଲିସ୍ କରିବା ପାଇଁ ଦୋକାନ ସଜାଇବା ପାଇଁ ଓ ବିକ୍ରି ବଢ଼ା-ଇବା ଉଦ୍ଦେଶ୍ୟରେ ସ୍ୱତନ୍ତ୍ର ସପ୍ତାହ ପାଳିବା ପାଇଁ ପ୍ରତି ବଜାରର ଗୋଟିଏ ଲେଖାଁ କୋଅପରେଟିଭ କମିଟୀ ଅଛି । ସେହି କମିଟୀର ଉଦ୍ୟମରେ ପ୍ରତ୍ୟେକ ଦୋକାନକୁ ଏଭଳି ସଜାଇ ଦିଆ ଯାଇଛି ଯେ ଦେଖିଲେ ପେଟ ପୂରି ଯିବ । ଜାପାନରେ ରେସେଇ ଘରୁ ଅନେକ ସମୟରେ ନିଆଁ ଲାଗି ଘର ପୋଡ଼ିଯାଏ । ନିଆଁ ଲିଭାଇବା ପାଇଁ ସ୍ତ୍ରୀଲୋକ-ମାନେ କୋ-ଅପରେଟିଭ କମିଟୀ ଗଢ଼ିଛନ୍ତି । ସେ ଦେଶର ଶତକଡ଼ା ୯୦ରୁ ଅଧିକ ରୋଷେଇ ଘର କାଠରେହିଁ ତିଆରି ହୋଇଛି । ମହିଳା କୋ-ଅପରେଟିଭ କମିଟୀର କାମ ହେଲା ତା'ର ପ୍ରତ୍ୟେକ ସଭ୍ୟ ଘର ଆଗରେ ଧୂଳି ମାରିବାକୁ ପାଣି ଛିଞ୍ଚୁଛନ୍ତି କି ନାହିଁ ଦେଖିବ । ମ୍ୟୁନିସି-ପାଲିଟି ଅଞ୍ଚଳରେ ମଧ୍ୟ ଏହିଭଳି କମିଟୀମାନ ଗଢ଼ା ଯାଇଥିବାରୁ ରାସ୍ତା-ସଫା ପାଇଁ ମ୍ୟୁନିସିପାଲିଟି ଯେଉଁ ଲକ୍ଷ ଲକ୍ଷ ଟଙ୍କା ଖର୍ଚ୍ଚ କରନ୍ତା ସେତକ ରହିଯାଉଛି ।

ଜାପାନକୁ ଆସିଥିବା କୋ-ଅପରେଟିଭ ପ୍ରଥାର ଜନ୍ମଭୂଇଁ ଜର୍ମାନୀ । କୃଷୀମାନେ କୋଅପରେଟିଭ ପ୍ରଥାକୁ ଯେଭଳି ଆଦରିଛନ୍ତି ତା'ଠୁ ବେଶି ଆଦରିଛନ୍ତି ଜାପାନୀ କୃଷୀମାନେ । ଜର୍ମାନୀରେ ଯେତେ କୋ-ଅପରେଟର ଅଛନ୍ତି ସେମାନଙ୍କ ଭିତରେ ଶତକଡ଼ା ୭୮ ଜଣ

ଚାଷୀ, ଅଥଚ ଜାପାନରେ ଶତକଡ଼ା ୯୦ ଜଣ । ଚାଷୀ-ଘର-ସଂଖ୍ୟାର ଶତକଡ଼ା ୭୫ କୋଅପରେଟିଭ ସୋସାଇଟିର ମେମ୍ବର । ଚାଷ କୋଅପରେଟିଭ ସୋସାଇଟୀ ଗୁଡ଼ିକର କାମ ହେଲା ଚାଷୀଙ୍କୁ ଦରକାର ବେଳେ ଟଙ୍କା ଯୋଗାଇ ଦେବ, ଚାଷରୁ ଉତ୍ପନ୍ନ ଫସଲ କିଣିନେବ ଓ ଚାଷୀର ବାହନ, ସାର, ଯନ୍ତ୍ରପାତି ଇତ୍ୟାଦି ଯାହା ଦରକାର ସେତକ କିଣିଆଣି ଯୋଗାଇ ଦେବ ।

## ଶହକେ ୯୮ ଗୋଦାମ କୋ-ଅପରେଟିଭ

ଜାପାନରେ ଯେତେ ସଂଖ୍ୟାରେ ଗୋଦାମ ଅଛି ସେଥିର ଶତକଡ଼ା ୯୮କୁ କୋଅପରେଟିଭ ସୋସାଇଟୀମାନ ଚଳାନ୍ତି । ଚାଷୀ ତା ବିଲରୁ ଯେତେ ପ୍ରକାର ଦ୍ରବ୍ୟ ଉତ୍ପାଦନ କରେ ସବୁ ଗୁଡ଼ିକର ବିକ୍ରି ଖରିଦ କୋଅପରେଟିଭ ସୋସାଇଟୀମାନଙ୍କ ଜରିଆରେହିଁ ହୁଏ । ଏହା ଫଳରେ ନିଜ ଜିନିଷ କିଭଳି ବିକ୍ରି ହେବ, ବିକ୍ରି ନ ହେଲେ କ'ଣ କରିବ, ଇତ୍ୟାଦି କଥାରେ ଚାଷୀକୁ ବୃଥା ମୁଣ୍ଡ ଖେଳାଇବାକୁ ପଡ଼େ ନାହିଁ ।

## ବିଶ୍ବାସ କରିବ ?

ଜାପାନର ଗୋଟିଏ ଦ୍ବୀପର ଲୋକଙ୍କ ରକ୍ତରେ ଶହ ଶହ ବର୍ଷ ହେଲା କିଭଳି କୋ-ଅପରେଶନ ବା ସହଯୋଗ କଥା ରହି ଯାଇଛି ତା'ର ବୋଧହୁଏ ଗୋଟିଏ ଉଦାହରଣ ଦେବା ଉଦ୍ଦେଶ୍ୟରେ ଚମନ୍-ଲାଲ୍‌ଜୀ ଗୋଟିଏ ଛୋଟ ଜାପାନୀ ଦ୍ବୀପର କଥା ତାଙ୍କ ରିପୋର୍ଟରେ ବର୍ଣ୍ଣନା କରିଛନ୍ତି ।

ସେ କାହାଣୀ ହେଉଛି—ସେ ଦ୍ବୀପରେ କେବଳ ୪୬ଟି ପରିବାର । ୪୦୦ ବର୍ଷ ହେଲା ସେମାନେ ଅନ୍ୟମାନଙ୍କ ଠାରୁ ଏକ ପ୍ରକାର ଅଲଗା ହୋଇ ରହି ଯାଇଛନ୍ତି । ଦ୍ବୀପର ଚାରିପଟେ ସମୁଦ୍ର ଏଭଳି "ବିଶ୍ବାସଘାତକ" ଯେ ସେ ଦ୍ବୀପକୁ ସେହି ସମୁଦ୍ର ବାଟେ ବାହାର ଲୋକେ ଯିବାଟାକୁ ନିରାପଦ ମନେ କରନ୍ତି ନାହିଁ ।

ଦ୍ୱୀପଟିର ନାମ ହାସୁସିମା । ସେ ଦ୍ୱୀପକୁ ଗଲେ ମନେହେବ ତୁମେ ସତେ ଯେପରି ଅତୀତକୁ ଫେରିଯାଇଛ । ଗଲା ୪୦୦ ବର୍ଷ ଭିତରେ ସେ ଦେଶର ଗୃହଚାଳନରେ ଟିକିଏ ହେଲେ ପରିବର୍ତ୍ତନ ହୋଇ ନାହିଁ । ସେମାନଙ୍କର ରାସ୍ତା ନାହିଁ କି ମଟର ନାହିଁ, ଟେଲିଫୋନ କି ବିଜୁଳି ଆଲୁଅ ନାହିଁ । ଆମେ ଭାବୁଥିବୁ ଏସବୁ ନ ଥିବାରୁ ସେମାନେ ବଡ଼ ଦୁଃଖରେ ଥିବେ । କିନ୍ତୁ ପ୍ରକୃତରେ ସେମାନେ ସୁଖରେ ଅଛନ୍ତି—ବିଜ୍ଞାନୀ ନାହାନ୍ତି ସେମାନେ ଦୁଃଖ ଭୋଗ କରୁଛନ୍ତି ।

## କାମ ଏକାଠି—ଖେଳ ଏକାଠି

୪୨ ଟି ଯାକ ପରିବାର କାମ କରନ୍ତି ଏକାଠି— ଖେଳନ୍ତି ଏକାଠି । ଯେ ଯାହା ରୋଜଗାର କରେ ସବୁତକ ଗୋଟିଏ ପାଣ୍ଠିକୁ ଯାଏ ଓ ସେହି ପାଣ୍ଠି ସମସ୍ତଙ୍କ ମଙ୍ଗଳ ପାଇଁ ଖର୍ଚ୍ଚ ହୁଏ ।

ନିକଟରେ ଗୋଟିଏ ଖବର କାଗଜରେ ସେମାନଙ୍କ ବିଷୟ ବର୍ଣ୍ଣନା କଲାବେଳେ ଲେଖା ହୋଇଥିଲା ଯେ ସେମାନେ କମ୍ୟୁନିଷ୍ଟ । ତାଙ୍କ ସରଦାର କହିଲେ ଏଭଳି ଲେଖିବା ଠିକ୍ ହୋଇ ନାହିଁ । ଆମେ ରାଜନୀତିକ କମ୍ୟୁନିଷ୍ଟ ନୋହୁଁ —ଅର୍ଥନୀତିକ କମ୍ୟୁନିଷ୍ଟ । ବରଂ ଆମ ବିଷୟରେ ଏତିକି ଲେଖାଯାଇ ପାରିଥା'ନ୍ତା ଯେ ଆମେ କିଓଡ଼ୋ ନୀତିରେ ଚାଲୁ ( କିଓଡ଼ୋ ଶବ୍ଦର ଅର୍ଥ କୋଅପରେଶନ ବା ସହଯୋଗ ) ।

## ଯେତିକି ସ୍ଥାନ ସେତିକି ଜନାଇ ଲୋକ ରହ !

ହାସୁସିମା ଦ୍ୱୀପଟି ଖୁବ୍ ଛୋଟ— ଏହାର କ୍ଷେତ୍ରଫଳ ୨୧ ବର୍ଗ-ମାଇଲ ମାତ୍ର । ଏତିକି ସ୍ଥାନରେ ଅଳ୍ପ ଲୋକହିଁ ରହି ପାରିବେ । ସେମାନେ ସ୍ଥିର କରି ଦେଇଛନ୍ତି କେତେଜଣ ଲୋକ ସେ ଦ୍ୱୀପରେ ରହିବେ । ତା'ଠାରୁ ଯଦି ସଂଖ୍ୟା ବେଶି ହୋଇ ଗଲା ଗୁଳା ପଡ଼େ କାହାକୁ ଦ୍ୱୀପରୁ ଜାପାନର ଅନ୍ୟ ଅଂଶକୁ ପଠାଇ ଦିଆଯିବ । ଅନ୍ତୁରି

ମଧ୍ଧ ନିୟମ କରା ଯାଇଛି ଯେ ବାପର ବଡ଼ ପୁଅହିଁ ସେହି ଦ୍ୱୀପରେ ରହିବ— ଅନ୍ୟ ସବୁ ପୁଅ ପ୍ରଧାନ ଜାପାନ ଭୂଇଁ କୁ ଚାଲି ଯିବେ । ଏ ନିୟମ ଥାଇ ମଧ୍ଧ ଲୋକ ସଂଖ୍ୟା ବଢ଼ିଗଲେ ଏଭଳି ଗୁଳା ପଡ଼ି ସ୍ଥିର କରାଯାଏ କଏ ଯିବ ।

ଯାହା ରୋଜଗାର କରିବେ ଏକାଠି ରଖିବେ, ଏକାଠି ଖର୍ଚ୍ଚ କରିବେ, କାହାରି ବ୍ୟକ୍ତିଗତ ସମ୍ପତ୍ତି ନାହିଁ —ଲୋକ ବେଶି ହୋଇ ଗଲେ ଗୁଳା ପଡ଼ି ସ୍ଥିର ହୋଇଯିବ କଏ ବାହାରକୁ ଚାଲିଯିବ । ଏହାଠାରୁ ବଳି ସହଯୋଗ ମନୋବୃତ୍ତିର କଥା କ'ଣ ହୋଇ ପାରେ ?·

ହାସୁସିମା ଦ୍ୱୀପ ଲୋକଙ୍କର ଯେଉଁ ମନୋବୃତ୍ତି ସେହି ସହଯୋଗମୂଳକ ମନୋବୃତ୍ତି ଅନେକ ଛୋଟ ଛୋଟ କାରଖାନାର ଶ୍ରମିକମାନଙ୍କ ଭିତରେ ଦେଖିବାକୁ ମିଳେ । ସେ ସବୁ କାରଖାନାରେ ଶ୍ରମିକମାନେ ହେଉଛନ୍ତି ଅଂଶୀଦାର । ସେହିମାନେ ଅଂଶୀଦାର ହୋଇ କାରଖାନା ଚଳାଉ ଥିବା ନିଜେହିଁ ନିଜର ମାଲିକ ହୋଇ ପାରିଛନ୍ତି । ମାଲିକ ଓ ଶ୍ରମିକ ଭେଦ ସୃଷ୍ଟି ହେବାର ଅବକାଶ ନାହିଁ ।

## ଚାରିଆଡ଼େ ସେହି କଥାହିଁ ଶୁଣା ଯାଉଛି

ଚମନ୍‌ଲାଲ୍‌ଜୀ ଗୋଟିଏ ବାକ୍ୟରେ ଯେଭଳି ବର୍ଣ୍ଣନା କରିଛନ୍ତି ଜାପାନରେ କୋଅପରେଶନ ବିଷୟରେ ତା'ଠାରୁ ଅଧିକ ଭଲ ବର୍ଣ୍ଣନା ଆଉକିଛି ହୋଇ ପାରିବ ନାହିଁ । ସେ ଲେଖିଛନ୍ତି—"ମୋର ଜାପାନ ରହଣି ବେଳେ ପ୍ରତିଦିନ ଯେଉଁଠିକି ଯାଇଛି, ସେଠି ଜାପାନର ଏହି ଅଦ୍ଭୁତ କୋଅପରେଶନ ବିଷୟହିଁ ଶୁଣିଛି ।" ଖବର କାଗଜମାନଙ୍କର ପୃଷ୍ଠାରେ ଏହି ବିଷୟରେ ବରାବର ଚର୍ଚ୍ଚା ଚାଲିଥାଏ ।

## "କୋ-ଅପରେଟିଭ ଗାଁ"

ସେ ଦେଶର କୃଷି ବିଭାଗର ଜଣେ ପ୍ରଧାନ ଅଫିସର ଶ୍ରୀ ମିନୋରୁ ଉମିଜୁମି ଗୋଟିଏ ଆଦର୍ଶ କୋଅପରେଟିଭ ଗାଁର ବର୍ଣ୍ଣନା କପରି କରିଛନ୍ତି ଶୁଣନ୍ତୁ:—

ପ୍ରଥମେ ଯେତେବେଳେ କୋଅପରେଟିଭ ଗଢ଼ାଗଲା, ପୂର୍ବର ଜମିଦାରମାନେ ସୋସାଇଟୀର ଡିରେକ୍ଟର ହୋଇ ନିଜ ଇଚ୍ଛା ଅନୁସାରେ ଗାଁଟିକୁ ଚଳାଇବାକୁ ବସିଥିଲେ । କିନ୍ତୁ କୃଷୀମାନେ ସେମାନଙ୍କୁ ବାଦ୍ ଦେଇ ଦେଲେ । ସୋସାଇଟୀ ଜରିଆରେ ଚେଷ୍ଟା କରାଗଲା ଜଳସେଚନ, ଉନ୍ନତ ଧରଣର ଯନ୍ତ୍ରପାତି ଓ ଉନ୍ନତ ପ୍ରଣାଳୀରେ କୃଷିଦ୍ୱାରା ଅଳ୍ପ ଲୋକେ କିଭଳି ଅଧିକ କାମ କରିପାରିବେ । ଯେତେ ଲୋକ କାମ କରିବାକୁ ସକ୍ଷମ ସେମାନେ ଯେମିତି ପୂରାକାମ ପାଇବେ—ଅର୍ଥାତ୍ ସେମାନଙ୍କ ସମୟ, କାମ ଅଭାବରୁ ବୃଥା ହୋଇଯିବ ନାହିଁ, ସେଥିପ୍ରତି ପ୍ରଥମେ ଦୃଷ୍ଟି ଦିଆଗଲା । ଫଳରେ କେତେଗୁଡ଼ିଏ କୁଟୀର ତଥା ଗ୍ରାମ୍ୟ ଶିଳ୍ପର ଯୋଜନା କରାଗଲା । ଗୋଟାଏ ସିଲାଇ କଳ କାରଖାନା ବସାଗଲା ଓ କେତେ-ଲୋକ ସେଥିରେ କାମକଲେ ।

"କୃଷୀମାନେ ଗହମ ଓ ଧାନ ଆଣି ସୋସାଇଟୀ ଅଫିସରେ ଦେଇଯା'ନ୍ତି ଓ ଅଟା ଓ ଚାଉଳ ନେଇଯା'ନ୍ତି । ଗହମ ଓ ଧାନ ଚୋପାରୁ ଗୋଟାଏ ପ୍ରକାର ଭଲ ଜମିସାର ତିଆରି ହୁଏ । ସେହି ଗାଁରେ ଲୁଣ ତିଆରି ହୁଏ ଓ ଘର ପିଛା ବାଣ୍ଟି ଦିଆ ଯାଏ ।

## ବିବାହ ପୋଷାକ ରହିଛି

"କୃଷୀ ଗହମ ବା ଧାନ ଦେଇଗଲେ ତା' ବଦଳରେ ଆଉଗୋଟିଏ ଗାଁରୁ ଭଲ ଲୁଗା ଆଣି ତାଙ୍କୁ ଯୋଗାଇ ଦିଆ ଯାଏ । ବିବାହ ବେଳେ ସ୍ତ୍ରୀ ଲୋକମାନେ ଠିକଏ ସ୍ୱତନ୍ତ୍ର ପୋଷାକ ପିନ୍ଧିବା ଦରକାର । ସୋସାଇଟୀ ଅଫିସରେ ପାଞ୍ଚସେଟ୍ ବାହାଘର ଲୁଗା ରହିଛି—ଭଡ଼ାରେ ଦିଆଯାଏ ।

"ସେହି ଗାଁର ସିଲାଇ କ୍ଲବ୍‌ର ସଭ୍ୟ ସଂଖ୍ୟା ଶହେ ପଚିଶ । ସେମାନଙ୍କର ଗୋଟିଏ ସ୍ୱତନ୍ତ୍ର କ୍ଲବଘର ଅଛି । ସିଲାଇ କଳରେ ଯାହା ସବୁ ତିଆରି ହୁଏ, ଏହି ସଭ୍ୟମାନେ ପରସ୍ପର ଭିତରେ ବାଣ୍ଟି ନିଅନ୍ତି ।

## ଚୂଲିର ଉନ୍ନତି ପ୍ରତି ଦୃଷ୍ଟି

ଭଲ ଚୁଲି ନ ହେଲେ ରୋଷେଇ ତ ଡେରି ହୁଏ--ରନ୍ଧାଳିବାଙ୍କ ହାଇରାଣ ହୁଏ । ତେଣୁ ସୋସାଇଟୀର କାମ ହେଲା ଚୂଲିର ଉନ୍ନତି କିପରି ହେବ ସେଥିପ୍ରତି ନଜର ଦେବା । ଉନ୍ନତ ଚୂଲି ତିଆରି ଖର୍ଚ୍ଚର ଶତକଡ଼ା ଦଶଭାଗ ସୋସାଇଟୀ ବହନ କରେ ।

## ସ୍ତ୍ରୀ ଶିକ୍ଷା ପାଇଁ ନଜର

"ସୋସାଇଟୀର ତିନି ଚାରି ଜଣ ଡିରେକ୍ଟର ମହିଳା । ସେମାନେ ଗୋଟିଏ ମହିଳା ସଙ୍ଘ ଗଢ଼ିଛନ୍ତି । ମହିଳାମାନେ କିପରି ଠିକ୍ ସମୟରେ ରେଡ଼ିଓ ଶୁଣିବେ, ଭଲ ଭଲ ମାଗାଜିନ ( ପତ୍ର ପତ୍ରିକା ) ପାଇ ପାରିବେ ଓ ପଢ଼ିବେ, ସେମାନଙ୍କୁ ରୋଷେଇ ବିଷୟରେ ଉପଯୁକ୍ତ ଶିକ୍ଷା ଦିଆଯାଇ ପାରିବ ଓ ଭଲ ଭଲ ପୋଷାକ ତିଆରି ଶିଖିବେ ଇତ୍ୟାଦି କଥା ଏହି ସଙ୍ଘ ଦେଖେ । ସୋସାଇଟୀର ଗୋଟିଏ ଲାଇବ୍ରେରୀ, ଗୋଟିଏ ପ୍ରସୂତି ଭବନ ଓ ଗୋଟିଏ ଔଷଧାଳୟ ଅଛି ।

## ବଳକା ପଇସା କ'ଣ ହୁଏ

"ଯେଉଁମାନଙ୍କର ପଇସା ବଳେ ସେମାନେ ସୋସାଇଟୀରେ ଆଣି ଜମା ଦିଅନ୍ତି । ସେହି ଟଙ୍କାରୁ ଗାଁର ଉନ୍ନତି ପାଇଁ ଖର୍ଚ୍ଚ ହୁଏ ।"

ଆମ ଦେଶରେ କୋଅପରେଶନ ପ୍ରତି ଲୋକଙ୍କର ଆଗ୍ରହ କ୍ରମେ ବଢ଼ୁଥିବାରୁ ଏହିଭଳି କେତୋଟି ଆଦର୍ଶ ଗାଁ ବସାଇବାର ଉଦ୍ୟମ କରାଯାଇ ପାରେ ବୋଲି ଚମନ୍‌ଲାଲ୍‌ଜୀ ଆଶା ପ୍ରକାଶ କରିଛନ୍ତି ଓ ପରାମର୍ଶ ଦେଇଛନ୍ତି ।

## ଯୁବକମାନଙ୍କ ମନକୁ ତାଲିମ କରାଯାଉଛି

ଜାପାନର ଭବିଷ୍ୟତ କୋ-ଅପରେଟିଭ ସୋସାଇଟୀମାନଙ୍କ ଭିତରେହିଁ ରହିଛି ବୋଲି ସେମାନଙ୍କର ବିଶ୍ୱାସ ହୋଇ ଯିବାରୁ

ଖବର କାଗଜମାନଙ୍କରେ ଏ ବିଷୟରେ ଯେତେ ଲେଖା ପ୍ରକାଶ ପାଏ, ପ୍ରାୟ ସବୁଗୁଡ଼ିକ ଯୁବକ ଓ ଯୁବତୀମାନଙ୍କ ଉଦ୍ଦେଶ୍ୟରେ ହିଁ ଲେଖା ଯାଇଥାଏ । ଲେଖକମାନେ ଚେଷ୍ଟା କରନ୍ତି ଯୁବକ ଯୁବତୀ-ମାନଙ୍କ ମନକୁ କୋ-ଅପରେଶନ ପ୍ରତି ଆକୃଷ୍ଟ କରିବା ପାଇଁ ।

## "କୋ-ଅପରେଟିଭ୍ ମ୍ୟାଜିକ୍"

ଜାପାନରେ କୋ-ଅପରେଟିଭ ଆନ୍ଦୋଳନ କଭଳି ମ୍ୟାଜିକ ସୃଷ୍ଟି କରିଛି ସେହିକଥା ବର୍ଣ୍ଣନା କରିବାକୁ ଯାଇ ଚମନ୍‌ଲାଲ୍‌ଜୀ ଗୋଟିଏ କଥାର ବର୍ଣ୍ଣନା କରିଛନ୍ତି । ଚମନ୍‌ଲାଲ୍‌ଜୀ ଦିନେ ଗୋଟାଏ ଭଡ଼ା ମଟରରେ ଯାଉଥିଲା ବେଳେ କଓବା ରବର କଂପାନୀର ଜଣେ ଶ୍ରମିକ ତାଙ୍କ ସଙ୍ଗରେ ବସି ଯାଉଥିଲେ । ସେହି ଶ୍ରମିକ ଜଣକ ସେ କଂପାନୀର ଜଣେ ଡିରେକ୍‌ଟର । ଆମେରିକାନମାନେ ଜାପାନକୁ ଅଧିକାର କଲାପରେ ଏହି କୋ-ଅପରେଟିଭ କମ୍ପାନୀଟି ଗଢ଼ି ଉଠିଛି । ତେଣୁ ଏହାର ବିଶେଷତ୍ୱ ରହିଛି ବୋଲି ନିଶ୍ଚୟ କୁହାଯିବ । ସେହି ଶ୍ରମିକ—ଡିରେକ୍‌ଟରଙ୍କ ନିଜ ଭାଷାରେ ଆମେ ଶୁଣିବା ସେ କୋ-ଅପରେଟିଭ କମ୍ପାନୀର କଥା:—

୧୯୪୫ ମାର୍ଚ୍ଚରେ ଯେତେବେଳେ ଉଡ଼ାଜାହାଜରୁ ଆକ୍ରମଣ ହେଲା, ସୁମୋଗୀ ବ୍ରାଞ୍ଚ ଫାକ୍‌ଟେରୀଟି ସଂପୂର୍ଣ୍ଣରୂପେ ଧ୍ୱଂସ ପାଇଗଲା । ଜୁନ୍ ମାସରେ ହେଡ୍ ଅଫିସର କାରଖାନା ମଧ୍ୟ ଆଂଶିକ ଧ୍ୱଂସ ପାଇଲା । ଘର ଗୁଡ଼ାକର ପାଞ୍ଚ ଭାଗରୁ ଭାଗେ ଜଳି ଗଲା ।

୧୯୪୫ ଅକ୍‌ଟୋବରରେ ସେ ଫାକ୍‌ଟେରୀ ଗୁଡ଼ାକର ମରାମତି କାମ ଆମେ ଆରମ୍ଭ କଲୁ । ଡିସେମ୍ବର ବେଳକୁ ହେଡ୍ ଅଫିସ ଫାକ୍‌ଟେରୀ ମରାମତ ହୋଇ ଗଲା ଓ ୧୯୪୬ ମାର୍ଚ୍ଚରେ ଟାୟାର ଫାକ୍‌ଟେରୀ ମରାମତି କାମ ଶେଷ ହେଲା ।

୧୯୪୭ ଜାନୁୟାରୀ ବେଳକୁ କମ୍ପାନୀର ମୂଳଧନ ଥିଲା ପଚିଶ ଲକ୍ଷ । ବାହାରକୁ ଟାୟାର ରପ୍ତାନୀ କରିବା ବ୍ୟବସ୍ଥା ହେଲା ।

ଅଗଷ୍ଟ ବେଳକୁ ମୂଳଧନ ବଢ଼ି ସତୁରି ଲକ୍ଷ ହେଲା ଓ କାରଖାନା ବଢ଼ିଲା । ଆଜି ସେହି କାରଖାନାରେ ସାଇକେଲ ଟାୟାର, ଟ୍ୟୁବ୍ ଇନ୍‌ସୁଲେଟିଙ୍ଗ୍ ଟେପ୍ ଓ ରବର ବ୍ୟାଣ୍ଡ ତିଆରି ହେଉଛି ।

କମ୍ପାନୀଟି ମାଲିକ ଓ ଶ୍ରମିକଙ୍କ ସମ୍ପୂର୍ଣ୍ଣ ସହଯୋଗରେ କିଭଳି ଚାଲିଛି—ତାହା ଦେଖିବାର କଥା । ଆମ କାରଖାନାର ତିନିଶହ ଯାକ ଶ୍ରମିକ କମ୍ପାନୀର ଡିରେକ୍ଟର । ମୋଟ ମୂଳଧନର ଶତକଡ଼ା ଅଣୀଭାଗ ଆମେ ଦେଇଛୁଁ । ଆମ ପ୍ରତିନିଧିମାନେ ଡିରେକ୍ଟର ବୋର୍ଡରେ ରହି କମ୍ପାନୀକୁ ଚଳାଉଛନ୍ତି ।

## "ଏହି କାରଖାନାଟି ଆମର"

ଗୋଟିଏ କାରଖାନାର ଜଣେ ଶ୍ରମିକ କିଭଳି ଚିନ୍ତା କରୁଛି ତାହା ଏହି କଥାରୁ ବୁଝା ପଡ଼ିଯିବ ।

—୦—

# ଜାପାନୀ ଚାଷୀ—
# ଜମିପ୍ରତି ଶ୍ରଦ୍ଧା

ଜାପାନ ତା'ର କୁଟୀର ଶିଳ୍ପ ପାଇଁ ଯେ ଆମର ଗୁରୁ ହୋଇ ରହିବ ତାହା ନୁହେଁ—ଚାଷରେ ମଧ୍ୟ ସେ ଆମର ଗୁରୁ । ଜାପାନୀ ପ୍ରଣାଳୀରେ ଚାଷକର ବୋଲି—ଭାରତର ଜନନାୟକମାନେ ଆଜି ଗାଁଏ ଗାଁଏ ପ୍ରଚାର କଲେଣି । ଆମେ ଏକରକେ ଯାହା ଧାନ ଫଳାଉଛୁଁ—ଜାପାନ ଏକରକେ ତା'ର ତିନିଗୁଣ ଫଳାଉଛି । ଆମ ଚାଷୀମାନେ ଯେ ପରିଶ୍ରମୀ ନହନ୍ତି—ଏକଥା କୁହାଯାଇ ପାରିବ ନାହିଁ; କିନ୍ତୁ ଜାପାନୀମାନଙ୍କ ସମକକ୍ଷ ନ ହେବାର କାରଣ ହେଉଛି—ସେମାନେ ଜମିରେ ଭଲ ଖତ ଦେଉଛନ୍ତି ଓ ଉନ୍ନତ ପ୍ରଣାଳୀରେ ଚାଷ କରୁଛନ୍ତି ।

ଗତ ସତୁରି ବର୍ଷ ଧରି—ଜାପାନୀ ଚାଷୀ ଜୋର ଦେଇଛି—ଅଳ୍ପ ଜମିରୁ କିପରି ବେଶି ଫସଲ ଆମଦାନୀ କରିବ । ଗୁଡ଼ାଏ ଜମି ଚଷି ଗୁଡ଼ାଏ ଫସଲ ପାଇବା ତା'ର ଲକ୍ଷ୍ୟ ନୁହେଁ ।

ପୃଥିବୀର ଧାନଉତ୍ପାଦନକାରୀ ଦେଶମାନଙ୍କ ଭିତରେ ଜାପାନ ସବୁଠାରୁ ଅଧିକ ଧାନ ମାଣ ପିଛା ଆମଦାନୀ କରୁଛି । ଶ୍ୟାମ ବା ଥାଇଲଣ୍ଡ, ବର୍ମା, ଭାରତ, ଜାଭା, ମାଳୟ ଓ କୋରିଆରେ ଖଣ୍ଡେ ଜମିରୁ ମହଣେ ଧାନ ଆମଦାନୀ ହେଉଥିବା ସ୍ଥଳେ—ଜାପାନ ଆମଦାନୀ କରୁଛି ସେତିକି ଖଣ୍ଡେ ଜମିରୁ ଦୁଇ ମହଣ ବତିଶ ସେର । ଚୀନ୍ ଓ ଫର୍ମୋଜା ବହୁ ଚେଷ୍ଟା କଲେ ମଧ୍ୟ ସେତିକି ଆକାରର ଖଣ୍ଡେ ଜମିରୁ ମହଣେ ଅଠାଇଶ ସେରରୁ ବେଶି ଆମଦାନୀ କରି ପାରୁ ନାହାନ୍ତି ।

ଜମି ପଚ୍ଛରେ ସେଠି ଚୃଷୀ ଲଗି ରହିଚ୍ଛି, ଉନ୍ନତ ପ୍ରଣାଳୀର ବାହନ ଉତାରୁଚ୍ଛି, ଯଥେଷ୍ଟ ଖତ ଭର୍ତ୍ତି କରି ଦେଉଚ୍ଛି ଓ ଚୃଷର ବାଟ ପାଇଚ୍ଛି । ଆମେ ବର୍ଷକରେ ଦୁଇଟା ତିନିଟା ଫସଲ ଆମଦାନୀ କରିବା-ପାଇଁ ଚେଷ୍ଟା କରି କୌଣସି ଫସଲଟା ଭଲ ଉତାରି ପାରୁନାହୁଁ— ବରଂ ଜମିଟା ଖରାପ କରି ଦେଉଚ୍ଛୁ ।

ଆମ ଚୃଷୀଙ୍କ ସହିତ ଜାପାନୀ ଚୃଷୀଙ୍କ ତୁଳନା କରି ଚମନ୍‌ଲାଲ୍‌ଜୀ ଲେଖିଚ୍ଛନ୍ତି ।

ଆମ ଚୃଷୀମାନଙ୍କର ଖ୍ୟାତି ଅଚ୍ଛି ଯେ ସେମାନେ ଖୁବ୍ ପରିଶ୍ରମ କରି ପାରନ୍ତି, କିନ୍ତୁ ଏତେ ଖଣ୍ଡେ ଛୋଟ ଜମିରୁ କିଭଳି ଯଥେଷ୍ଟ ଫସଲ ଉତାରି ନେଇ ହେବ—ସେ କୌଶଳରେ ଜାପାନୀ ଚୃଷୀଙ୍କ ସହିତ ଆମ ଚୃଷୀ ସମକକ୍ଷ ହୋଇ ପାରିବେନି । ଜାପାନରେ ଚୃଷ କିଆରୀଗୁଡ଼ାକୁ ଦେଖିଲେ ମନେ ହେବ—ସତେ ଯେପରି ଗୋଟି ଗୋଟି କରି ସୁନ୍ଦର ଭାବରେ ଗଚ୍ଛ ଲଗାଇ କିଏ ବଗିଚ୍ଛିମାନ କରିଚ୍ଛି । ଟ୍ରେନରେ ଚୃଲି ଯାଉଥିବା ବେଳେ ସେ କିଆରୀରୁ ଆଖି ଫେରାଇବାକୁ ମନ ହେବ ନାହିଁ । ଜାପାନ ଚୃଷୀ ଇଞ୍ଚେ ସୁଦ୍ଧା ଜମି ନଷ୍ଟ କରେ ନାହିଁ । ଯୁଦ୍ଧ ପରେ ଟୋକିଓ ଓ ଓସାକା ଭଳି ବଡ଼ ବଡ଼ ସହରମାନଙ୍କର ଫୁଟ୍‌ପାଥରେ ଗହମ ଫଳିବାର ମୁଁ ଦେଖିଚ୍ଛି । ବୋମା ମାଡ଼ରେ ଘର ସବୁ ଭାଙ୍ଗି ଯାଇଚ୍ଛି । ନୂଆ କରି ତିଆରି କରିବାକୁ ସମ୍ବଳ ନାହିଁ । ତା' ଭିତରେ ଗହମ ରୁଆ ଯାଇଚ୍ଛି ବା ପନି ପରିବା ବଗିଚ୍ଛ କରା ଯାଇଚ୍ଛି । ଟୋକିଓ—ୟୁକୋହାମା ସଡ଼କ କ...ରେ ଗୋଟାଏ ବଡ଼ ମନ୍ଦିରର ହତା ଗୋଟାଏ ଆଦର୍ଶ ଫାର୍ମ ...ହୋଇଚ୍ଛି । ରେଲ୍ ଲାଇନ କଡ଼ର ପ୍ରତ୍ୟେକ ଇଞ୍ଚ ଜମିରୁ ଖାଦ୍ୟ ଶସ୍ୟ ଉତ୍ପୁରା ଯାଉଚ୍ଛି । ଅନୁମାନ କର, ଭାରତର ରେଲ୍ ଲାଇନ୍ କରେ କରେ କେତେ ଲକ୍ଷ ଏକର ଜମି ପଡ଼ିଆ ପଡ଼ି ରହିଚ୍ଛି । ବର୍ଷାଦିନେ ଗୋଟାଏ ଫସଲ ଏ ଜମିରୁ ଉତାରି ନେଲେ ବି—ଆମ ଦେଶର ଖାଦ୍ୟ ସମ୍ପଦ କେତେ ବଢ଼ି ଯାଆନ୍ତା ।

## ଜମିପ୍ରତି ଶ୍ରଦ୍ଧା

ଜାପାନୀ ଚାଷୀର ଜମି ପ୍ରତି ଅତି ମାତ୍ରାରେ ଶ୍ରଦ୍ଧା । ମନୁଷ୍ୟ ବଞ୍ଚି ରହିବା ପାଇଁ ଯାହା କିଛି ଦରକାର—ସେ ସବୁ ଏହି ମାଟିହିଁ ଜନ୍ମ ଦେଉଛି ବୋଲି—ସେ ବିଶ୍ୱାସ କରେ । ପ୍ରକୃତରେ ଜାପାନୀ ଚାଷୀହିଁ ଧରିତ୍ରୀ ମାତାର ପୂଜା କରେ । ଭାଗ୍ୟରେ ଥିଲେ ଫସଲ ହେବ ବୋଲି ସେ ଏ କଥାଟାରେ ବିଶ୍ୱାସ କରେନା । ଯିଏ ଯାହାର ଜମିରେ ଚାଷ କଲେ ମୋଟରେ ବେଶି ଫସଲ ହେବ ବୋଲି ସେ ଭାବେନା । ଫଳରେ ସମସ୍ତଙ୍କ ସହିତ ସହଯୋଗରେ ଚାଷ କରେ । ଜାପାନୀ ଚାଷୀ ପୃଥିବୀରେ ଯେଉଁଠି ଥାଉ ପଛକେ ସେ "ଜାପାନୀ ଚାଷୀ" ହନୋଲୁଲୁ, କାଲିଫର୍ଣ୍ଣିଆ, ବ୍ରାଜିଲ, ପେରୁ ଯେଉଁଠି ଦେଖ ଜାପାନୀ ଚାଷୀ ସେହିଠି ଆଦର୍ଶ କୃଷି କ୍ଷେତ୍ର ଠିଆ କରି ଦେଉଛି ।

## ସରକାର ସାହାଯ୍ୟ କରନ୍ତି

ଚମନ୍‌ଲାଲ୍‌ଜୀ ପୁଣି ଲେଖିଛନ୍ତି—ଗୋଟାଏ ଆତ୍ମଘାତୀ ଯୁଦ୍ଧରେ ପଶିଯାଇ ଜାପାନ ସରକାର ମସ୍ତବଡ଼ ଭୁଲ କରିଥିଲା । କିନ୍ତୁ ଚାଷୀକୁ ସାହାଯ୍ୟ କରିବା ପାଇ ସେ ସରକାର ସବୁବେଳେ ତତ୍ପର ଥିଲା । ପୂର୍ବରୁ ସେହିଭଳି ସାହାଯ୍ୟ କରିଥିଲା ବୋଲି ଯୁଦ୍ଧ ଭିତରେ ମଧ୍ୟ ଜାପାନୀ ଚାଷୀ ସୁଖ ସମୃଦ୍ଧିର ଜୀବନ କଟାଇ ଦେଲା ।

ଜାପାନୀ ସରକାର ଏ ଭଳି କୃଷି କୋ-ଅପରେଟିଭ ସୋସାଇଟି-ମାନ ଗଢ଼ି ନେଉଥିଲା ଯେ ପ୍ରତି ଗାଁରେ ଜାଣି ଗୋଟାଏ ଗୋଟାଏ ଲୋକ ସରକାର ଗଢ଼ି ଉଠିଥିଲା । ଯୁଦ୍ଧ ଲାଗିବାର ବହୁବର୍ଷ ପୂର୍ବରୁ ଖାଦ୍ୟ କାରବାର କଣ୍ଟ୍ରୋଲ କରି ସରକାର—ଚାଷୀମାନଙ୍କର ଅବସ୍ଥାର ଯଥେଷ୍ଟ ଉନ୍ନତ କରାଇ ଦେଇଥିଲା । ସମଗ୍ର ଜାପାନରେ ରିସର୍ଚ୍ଚ ଷ୍ଟେସନ ବା ଗବେଷଣା କେନ୍ଦ୍ରମାନ ବସାଇ ଦେଇ ଚାଷୀମାନଙ୍କ ଉନ୍ନତ ପ୍ରଣାଳୀର ଚାଷ ଶିଖାଉ ଥିଲା । ସରକାର କାମ ହେଉଥିଲା ଚାଷୀକୁ ଭଲ ବିହନ ଯୋଗାଇ ଦେବ, ସେମାନଙ୍କ କ୍ଷେତରେ ଭଲ

ଖତ ପହଁଞ୍ଚାଇ ଦେବ, ବିଜ୍ଞାନ ଯେତେ ଯେତେ ନୂଆ ନୂଆ ତଥ୍ୟ ବାହାର କଲା ସେ ସବୁକୁ ନେଇ ଚାଷୀକୁ ଜଣାଇ ଦେବ—ଚାଷୀ ଯେପରି ଅଧିକ୍ରା ସମୟରେ କାମ ପାଇବ ସେଥିପାଇଁ ନାନା ପ୍ରକାରର କୁଟୀର ଓ ଗ୍ରାମ୍ୟ ଶିଳ୍ପ ଖୋଲିଦେବ। ଶିଳ୍ପରୁ ଉପର ପଇସା ପାଇବ—ଚାଷରୁ ସବୁ ଅଭାବ ମେଣ୍ଟିବ—ଏହି ବ୍ୟବସ୍ଥାଟି ସରକାର କରି ଦେଇଥିଲା।

ଜାପାନୀ ଜାତିର ପ୍ରଧାନ ଖାଦ୍ୟ ଭାତ ହୋଇ ଥିବାରୁ ଧାନ ଚାଷ ଉପରେ ସେମାନେ ଯେ ଏତେ ଜୋର ଦେଇଛନ୍ତି—ଏଥିରେ ବିସ୍ମିତ ହେବାର କିଛି ନାହିଁ। ସତୁରି ବର୍ଷ ଭିତରେ ଜାପାନୀ ଚାଷୀ ଏକରକେ ଯାହା ପାଉଥିଲା ତାହା ଦୁଇଗୁଣ କରି ଦେବା କମ ବିସ୍ମୟକର ବିଷୟ ନୁହେଁ।

୧୮୮୦ ବେଳେ ଜାପାନରେ ଖୁବ୍ କମ୍ ଗହମ ହେଉଥିଲା। ଆଜି ଧାନ ତଳକୁ ଗହମର ସ୍ଥାନ। କମ୍ବା ଖୁବ୍ ହେଲେ ଧାନ—ତା' ପଛକୁ ବାଲି—ତା' ପଛକୁ ଗହମ। ସେତେବେଳେ ଏକରକେ ଯାହା ଗହମ ହେଉଥିଲା—ଆଜି ତା'ର ଅଢ଼େଇ ଗୁଣ ହେଉଛି। ଧାନରେ ଯେମିତ ଯଥେଷ୍ଟ ଖତ ଦେଇ ଫଳାଉଛନ୍ତି—ଗହମରେ ସେମିତ ଯଥେଷ୍ଟ ଖତ ଦେଇ ଫଳାଉଛନ୍ତି।

ଚାହା ବିଷୟରେ ମଧ୍ୟ ଏହି ଭଳି ଏକ କାହାଣୀ କୁହାଯାଇ ପାରେ। ଯେତେ ଜମିରେ ଚାହାଚାଷ ହେଉଥିଲା—ତା'ର ପରିମାଣ କମାଇ ଦେଲେ। କାରଣ ଅଳ୍ପ ଜମିରୁ ବେଶି ଆମଦାନୀ କଲେ। ଚାହା ପତର ତୋଳିବା ପାଇଁ ଅତି ଆଧୁନିକ ଯନ୍ତ୍ରପାତି ସେମାନେ ବ୍ୟବହାର କରନ୍ତି। ତେଣୁ ପୂର୍ବେ ଯେଉଁଠି ଦଶଜଣ ଲୋକ ଦରକାର ହେଉଥିଲେ ବର୍ତ୍ତମାନ ସେଠି ଜଣେ ମାତ୍ର ଲୋକ ଦରକାର ହୁଏ।

## ଶିଳ୍ପକୁ ବିଜ୍ଞାନର ଦାନ

ଚମନ୍‌ଲାଲ୍‌ଜୀଙ୍କ ଭାଷାରେ କହିବାକୁ ଗଲେ ଜାପାନରେ ଶିଳ୍ପ ଉତ୍ପାଦନ ପାଇଁ ବିଜ୍ଞାନ ଯାହା ଦାନ କଲା—କୃଷିର ଅନ୍ୟ

କୌଣସି ପଦାର୍ଥକୁ ସେଭଳି ସ୍ଥାନ ଦେଇ ପାରିନାହିଁ । ଶିଳ୍ପକୁ ବିଜ୍ଞାନର ଦାନର କାହାଣୀ ବର୍ଣ୍ଣନା କରିବାକୁ ଗଲେ—ଅନେକ କଥା କହିବାକୁ ପଡ଼ିବ । ଏଠାରେ ସ୍ଥାନର ଅଭାବ ।

ଜାପାନୀ କୃଷୀ କ୍ଷେତରେ କାମ କରୁଛି । ଜାପାନୀ ବୈଜ୍ଞାନିକ କୃଷୀ ପାଇଁ ବୈଜ୍ଞାନିକ ଗାରରେ ବସି କାମ କରୁଛି । ଗବେଷଣାଗାର ବା ରିସର୍ଚ୍ଚ ଷ୍ଟେସନରୁ ବାହାରୁ ଥିବା ଜ୍ଞାନ—କୃଷୀର କ୍ଷେତରେ ଯାଇଁ ପହଞ୍ଚି ଯାଉଛି ଓ କୃଷୀର ଅଭିଜ୍ଞତାରୁ ଗବେଷଣାଗାରରେ ନୂଆ ଜ୍ଞାନର ସୃଷ୍ଟି ହେଉଛି । ଏହି ଜ୍ଞାନଚକ୍ର ଜାପାନର କୃଷିଆଡ଼େ ଘୂରୁଛି । କେବଳ ଅଢ଼େଇଗୁଣ ଆୟତନ ବିଶିଷ୍ଟ ଜାପାନ ଦେଶରେ ପାଁଶ ପଞ୍ଚାନବେଟି ଗବେଷଣା କେନ୍ଦ୍ର—କେବଳ କୃଷ ବିଷୟରେ ଗବେଷଣା ଚଳାଇଛନ୍ତି ।

## ଜାପାନରେ ଗୋରୁ ଗାଈ ।

ଆମ ଦେଶଭଳି ଜାପାନରେ ଜଣେ ଜଣେ ଲୋକ ଗୁଡ଼ାଏ କରି ଗାଈ ରଖି ନାହାନ୍ତି । ଖୁବ୍ ହେଲେ ଦୁଇଟା କ ତିନଟା । ଫଳରେ ସେମାନେ ଖୁବ୍ ଯତ୍ନରେ ଥାଆନ୍ତି । ଜାପାନୀ ଗାଈ ଅଧିକ ଦୁଧ ଦେବାରେ ପୃଥିବୀର ପ୍ରଥମ ପୁରସ୍କାର ପାଇଥିଲା । ପୃଥିବୀରେ ଯେଉଁ ଦଶଟା କୁକୁଡ଼ା—ଅଧିକ ଅଣ୍ଡା ଦେବା ପାଇଁ ପୁରସ୍କାର ପାଇଥିଲେ —ତାଙ୍କ ଭିତରୁ ସାତଟା ଜାପାନୀ ।

ଏଠି ବିଶେଷ ଭାବରେ ଲକ୍ଷ୍ୟ କରିବାର କଥା ଯେ ଜାପାନରେ ଗୋରୁ ଖାଦ୍ୟ ନାହିଁ ବୋଲି କହିଲେ ଚଳେ । ବିଦେଶରୁ ଖାଦ୍ୟ ଆମଦାନୀ କରି ସେମାନେ ଏ ଭଳି ଯତ୍ନ ନେଉଛନ୍ତି । ଜମିରୁ ଯାହା ଉତ୍ପନ୍ନ ହୁଏ—ତାହା ମଣିଷ ଖାଏ । ଗୋରୁ ପାଇଁ ବାହାରୁ ଆମଦାନୀ କରନ୍ତି ।



# କେତେ ପ୍ରକାରର

# କୁଟୀର ଶିଳ୍ପ

ଜାପାନର ଗାଁ ମାନଙ୍କରେ ପଚିଶ ହଜାର ଛୋଟ ଛୋଟ କାରଖାନା ରହିଛି । ଅଡ଼ଷଠିଟା ଆଦର୍ଶ କାରଖାନାରେ—ଗାଁ କାରଖାନାମାନଙ୍କ ପାଇଁ କାରିଗର ତାଲିମ ହେଉଛନ୍ତି । କୃଷି ଜାତ ଦ୍ରବ୍ୟ ଉପରେ ଚାଲିଥିବା **ଶିଳ୍ପ** କାରିଗର ତାଲିମ ପାଇଁ ସ୍ୱତନ୍ତ୍ର ଅନୁଷ୍ଠାନ ରହିଛି । ବାଳକ ବାଳିକାମାନେ ସାତବର୍ଷିଆ ପ୍ରାଇମେରୀ ଶିକ୍ଷା ଶେଷ କଲାପରେ ଏହିସବୁ କାରଖାନାରେ ତାଲିମ ହୋଇ ଯାଆନ୍ତି ।

ଜାପାନ ସରକାର ଦେଖୁଛନ୍ତି ଯେ ମଫସଲରେ ଯଦି ଗୁଡ଼ାଏ ବେକାର ଲୋକ ରହିବେ—ସେମାନେ ସହରର କାରଖାନା-ମାନଙ୍କରେ କାମ କରିବାପାଇଁ ଆସି—ସହରରେ ଜମା ହେବେ । ସେମାନଙ୍କୁ କାମ ଯୋଗାଇବା ପାଇଁ ମଫସଲରୁ କଞ୍ଚାମାଲ ଆଣି ସହରରେ ଠୁଳ କରିବାକୁ ହେବ । ଏତେ ଅଡୁଆକୁ ଯିବା ଅପେକ୍ଷା—**ଶିଳ୍ପକୁ** ଗାଁଏ ଗାଁଏ ଖେଳାଇ ଦେଲେ ସବୁଅଡୁଆ ତୁଟିଯିବ । ସରକାରଙ୍କ ଏହି ନୀତି ଫଳରେ କ୍ରମେ ଅଧିକରୁ ଅଧିକ ଚାଷୀ ଛୋଟ ଛୋଟ ଗାଁ କାରଖାନାରେ କାମ କରୁଛନ୍ତି ଓ ଚାଷୀ ମାନେ ଜମି ଉପରେ ବୋଝ ବୋଲି କେହି ଅନୁଭବ କରୁନାହାନ୍ତି । ଆମର ଏଠି ଚାଷୀ ସଂଖ୍ୟା ବଢ଼ିବାମାନେ ଜମି ଉପରେ ବୋଝ ବଢ଼ିବା । ସେଠି ତାହା ହେଉନାହିଁ । କଞ୍ଚାମାଲ ସହରକୁ ବୋହିବା ଦରକାର ପଡୁନାହିଁ ।

## ଶହେ କୋଡ଼ିଏଟା ଗ୍ରାମ ଶିଳ୍ପ ।

ଚମନ୍‌ଲାଲ୍‌ଜୀ ଲେଖିଛନ୍ତି ଯେ ଜାପାନରେ ବହୁ ଗ୍ରାମ ଶିଳ୍ପ କପରି ଚାଲିଛି—ତାହା ମୁଁ ନିଜ ଆଖିରେ ଦେଖିଛି । ତା'ର ଗୋଟିଏ ତାଲିକା ଏଠାରେ ଦେଲି :—

(୧) ଗହମ ଅଟା ତିଆରି । (୨)ଆଳୁ ଅଟା ତିଆରି । (୩) ମିଠା-ଆଳୁ ଅଟା ତିଆରି । (୪) ଆଳୁ ଓ ଶସ୍ୟରୁ ଷ୍ଟାର୍ଚ୍ଚ ତିଆରି । (୫) ଚିନି । (୬) ମିଠା ଆଳୁ ଗ୍ଲୁକୋସ୍ । (୭) ମିଠା ଆଳୁ ହୁଇସ୍କି । (୮) ଗୋଲ ଆଳୁ ଗ୍ଲୁକୋସ୍ । (୯) ଆପଲ୍ ମଦ । (୧୦) ଅଙ୍ଗୁର ମଦ । (୧୧) କମଳା ମଦ । (୧୨) ମାଂସ ? (୧୩) ମାଛ ? (୧୪) ସୟା ବିନ୍ ପେଷ୍ଟ ? (୧୫) ସୟା ବିନ୍ ଖୁଆ । (୧୬) ସୟା ବିନ୍ ଦୁଧ ଓ ଦହି । (୧୭) ଜାମ୍—ଜେଲି । (୧୮) ମିଶ୍ରି । (୧୯) ଗାଈ ଦୁଧ ? (୨୦) ଗାଈ ଦୁଧର ଲହୁଣୀ । (୨୧) ଗାଈ ଦୁଧ ଖୁଆ । (୨୨) ପରିବା ଓ ଫଳ ( ଟିଣ-ଭର୍ତ୍ତି ) । (୨୩) ଛତୁ ଚାଷ (ବର୍ଷକୁ କୋଟି ଟଙ୍କାର ଛତୁ ହୁଏ । (୨୪) ହଂସ ଚର୍ବି । (୨୫) କୁକୁଡ଼ା ପାଳନ । (୨୬) ଘୁଷୁରି ମାଂସ ଓ ମାଂସ ଜାତ ଦ୍ରବ୍ୟ । (୨୭) ବତକ ପାଳନ । (୨୮) ବେଙ୍ଗ ଆଗୁର ( ଜାପାନୀମାନେ ଖୁବ୍ ଭଲ ପାଆନ୍ତି । ) (୨୯) ବରଫ ମାଛ । (୩୦) ମହୁ ଚାଷ । (୩୧) ଗୁଁ । (୩୨) ଚିନାବାଦାମ ଦୁଧ । (୩୩) ଚିନାବାଦାମ ଲହୁଣୀ ( ଚିନା ବାଦାମକୁ ଶହେ-ଦୁଇ ପ୍ରକାରେ ବ୍ୟବହାର କରାଯାଇ ପାରେ । ଯୁଦ୍ଧ ପୂର୍ବରୁ ଜାପାନ—ବିଦେଶକୁ ଚିନାବାଦାମ ଦୁଧ ଓ ଚିନାବାଦାମ ବଟର ପଠାଉଥିଲା । ) (୩୪) ସମୁଦ୍ର ଜଳରୁ ଖାଦ୍ୟ ଉତ୍ପାଦନ । (୩୫) ଅଗର ଅଙ୍ଗର । (୩୬) Seed weed ଜାତ ଦ୍ରବ୍ୟ ? (୩୭) ସ୍ପଞ୍ଜ ଚାଷ । (୩୮) ଶଙ୍ଖ । (୩୯) Veneer ? (୪୦) ଆସବାବ ପତ୍ର (Furniture) । (୪୧) ପିମ୍ପା ତିଆରି । (୪୨)କାଠରୁ ନାନାରକମ କାରୁ କାର୍ଯ୍ୟ ହୋଇଥିବା ଦ୍ରବ୍ୟ । (୪୩)କାଠ ଖେଳନା । (୪୪) କାଠ ଯୋତା । (୪୫) କାଠର କ୍ରୀଡ଼ା ଦ୍ରବ୍ୟ । (୪୬) ଖଣ୍ଡ ଖଣ୍ଡ କାଠ (Wood Chips)

(୪୭) କାଠ ମଣ୍ଡ । (୪୮) ହାତ ତିଆରି କାଗଜ । (୪୯) କେମିକାଲ ପଲ୍ପ ବା ମଣ୍ଡ । (୫୦) କାର୍ଡ୍ ବୋର୍ଡ୍ । (୫୧) ରଫ୍ ପେପର । ((୫୨) ସଜା ସଜି ପାଇଁ ପତଳା କାଗଜ । (୫୩) ଘର ଭିତର ସଜାଇବା ପାଇଁ କାଗଜ । (୫୪) କେମିକାଲସ୍ ବା ରସାୟନ ଦ୍ରବ୍ୟ । (୫୫) ଔଷଧ । (୫୬) ଲୁଣ । (୫୭) ରଙ୍ଗ ଓ ପେଣ୍ଟ୍ । (୫୮) ଦିଆ-ସିଲି । (୫୯) କାର୍ବାଇଡ୍ । (୬୦) କୁଣ୍ଡା-ତେଲ । (ଏହା ଗୋଟିଏ ନୂଆ ଶିଳ୍ପ ।) (୬୧) କାଂଫର ଅଏଲ୍ ବା ତେଲ । (୬୨) ମାଛ ତେଲ ଓ ମାଛ ଚର୍ବି । (୬୩) କପା ମଞ୍ଜି ତେଲ । (୬୪) ଅଲିଭ୍ ଅଏଲ୍ । (୬୫) ପିପରମେଣ୍ଟ । (୬୬) ମହମବତି । (୬୭) ମହମ । (୬୮) ଚର୍ବି । (୬୯) ଅଏଲ୍ ପେପର ପାଇଁ ଟଙ୍ଗ୍ (Tung) ଅଏଲ୍ । (୭୦) ସିଲ୍କ୍ ଲୁଗା । (୭୧) ତୁଳା ଲୁଗା । (୭୨) ଫାଲକ୍ସ କପଡ଼ା । (୭୩) ସଂଲେଇ ମାଲ୍ । (୭୪) ଫିତା । (୭୫) ଏମ୍ବ୍ରଏଡ଼ରୀ । (୭୬) ଖତ । (୭୭) କେମିକାଲ୍ ଖତ । (୭୮) ଠେକୁଆ ଲୋମ । (୭୯) ଚମଡ଼ା ସରଞ୍ଜାମ । (୮୦) ସାବୁନ । (୮୧) ଟଏଲେଟ୍ । (୮୨) ହାଡ଼ ଗୁଣ୍ଡ । (୮୩) ଅଠା । (୮୪) ଆଲକାତରା । (୮୫) ଇଣ୍ଡି-ଆନ୍ ଇଙ୍କ୍ ପାଇଁ କଳା । (୮୬) ପୋର୍ସିଲେନ୍ । (୮୭) ସିମେଣ୍ଟ । (୮୮) ଚୂନ । (୮୯) ମଶିଣା । (୯୦) କୁଠାର ଦଉଡ଼ି । (୯୧) ଛଣର ବାକସ (୯୨) ଟାଇଲ୍ । [୯୩] ଚୀନା ବାସନ । [୯୪] ବାଉଁଶ ସରଞ୍ଜାମ (ଜାପାନୀମାନେ ବାଉଁଶର ଚଉଦଶ ପ୍ରକାର ସରଞ୍ଜାମ ତିଆରି କରନ୍ତି । [୯୫] ବାଦ୍ୟ ଯନ୍ତ୍ର । [୯୬] ଇଲେକ୍ଟ୍ରୀ ବଲ୍ । ୯୭] ଗୃଷ ମେସିନ୍ । [୯୮] ଇଲେକ୍ଟ୍ରିକ୍ ମେସିନ୍ । [୯୯]କାମେରା । [୧୦୦] ବାଇନୋ କୁଲର । [୧୦୧] ବାଇ ସାଇକେଲ । [୧୦୨] ମିଟର । [୧୦୩] ଟର୍ଚ୍ଚ ଲାଇଟ । [୧୦୪] ଟର୍ଚ୍ଚ ବାଟେରୀ । [୧୦୫] ଚଷମା । [୧୦୬] ଆଗୁର ତିଆରି ମେସିନ । [୧୦୭] ଅରଟ । [୧୦୮] କାଠ କରତ ମେସିନ୍ । [୧୦୯] ସିଲେଇ କଳ । ]୧୧୦] ଓ୍ୱାଚ ବା ଘଡ଼ି । [୧୧୧] ଲୁହା ହତିଆର । [୧୧୨] ବୋଲ୍ଟ ଓ ନଟ୍ ।

ଜାପାନରେ ଯେଉଁଠିକି ଯିବ ସେଠି ଶୁଣିବ—ଦେଶକୁ କଳକଳ ଶିଳ୍ପ ସମୃଦ୍ଧ କରିବାକୁ ହେବ । ଯେଉଁ ଲକ୍ଷ ଲକ୍ଷ ସୈନ୍ୟ

ଯୁଦ୍ଧ କ୍ଷେତ୍ରରେ ଥିଲେ ସେମାନେ ଫେରି ଆସିଲେ । ଜାପାନ ଯେଉଁ ଉପନିବେଶଗୁଡ଼ିକ ହରାଇଲା ସେଠାରୁ ମଧ୍ୟ ଜାପାନୀମାନେ ପଳାଇ ଆସିଲେ । ଆମ ଦେଶର ଶରଣାର୍ଥୀ ସମସ୍ୟା ଭଳି ସମସ୍ୟା ସେଠାରେ ମୁଣ୍ଡ ଟେକି ଠିଆ ହେଲା । ତା'ର ସମାଧାନ କରି ପାରିଲା—"ଜାପାନୀ କୁଟୀର ଶିଳ୍ପ ।"

ଜାପାନୀମାନେ ବିଚାରୁଛନ୍ତି ଯେ କୌଣସି ଗ୍ରାମ୍ୟ ଶିଳ୍ପ ଠିଆ କରି ସେହି ଶିଳ୍ପ ଜାତ ଦ୍ରବ୍ୟ ବିଦେଶକୁ ରପ୍ତାନୀ କରି କି ଭଳି ପଇସା ଆଣିବେ ଓ ନିଜ ଲୋକଙ୍କୁ କାମ ଯୋଗାଇବେ ।

## ବେଙ୍ଗ ପଠାଇ ପଇସା ଆଣ !

କେତେ ନୂଆ ଗ୍ରାମ୍ୟ ଶିଳ୍ପର ଯେ କଳ୍ପନା ଓ ଯୋଜନା କରା-ଯାଉଛି ତା'ର ଠିକଣା ନାହିଁ । ବୈଜ୍ଞାନିକମାନଙ୍କର ମୁଣ୍ଡ ସବୁବେଳେ ସେହି ଦିଗରେ ଖେଳୁଛି । ଗୋଟିଏ ଜାତର ବେଙ୍ଗ ଖାଇବା ପାଇଁ ଭାରି ସୁଆଦ । ବିଦେଶରେ ସେହି ବେଙ୍ଗ ଓ ତା' ଆମ୍ବରର ଭାରି ଚାହିଦା ହେଉଛି । କି ଉପାୟ କଲେ ସେହି ବେଙ୍ଗ ଲକ୍ଷ ଲକ୍ଷ ସଂଖ୍ୟାରେ ଉତାରି ହେବ ତା'ରି ଚେଷ୍ଟା ଚାଲିଛି । ଦିନେ ହୁଏ ତ ଶୁଣାଯିବ ଯେ ଏହି "ବେଙ୍ଗ-ଚାଷ" ଶିଳ୍ପରେ ହଜାର ହଜାର ଲୋକ ପେଟ ପୋଷୁଛନ୍ତି ।

କାଠ ଛତୁ ବିଷୟରେ ମଧ୍ୟ ସେହି କଥା କୁହାଯାଇ ପାରେ । ଗୋଟାଏ ପ୍ରକାର କାଠଛତୁ ଉତାରି ପାରିଲେ ଗୋରୁ ଖାଦ୍ୟ ସମସ୍ୟାର ସମାଧାନ ହୋଇ ଯାଇ ପାରନ୍ତା ବୋଲି ଧରି ନିଆ ଯାଇଛି । ସେ ଦିଗରେ ଗବେଷଣା ଚାଲିଛି ।

କୁଟୀର ଶିଳ୍ପ,-ଗ୍ରାମ୍ୟ ଶିଳ୍ପର ପ୍ରତିଷ୍ଠା ଯେତିକି ବଢ଼ିବ ବେକାର ସମସ୍ୟାର ସମାଧାନ ସେତିକି ଶୀଘ୍ର ହୋଇ ଯାଇ ପାରିବ ଓ ଜାତିର ସମ୍ପଦ ସେହି ପରିମାଣରେ ବଢ଼ିଯିବ ।

—○—

# ସମୁଦ୍ର ଭିତରୁ—

# ପଇସା ଛାଣୁଛନ୍ତି

ଆମେ ଏପର୍ଯ୍ୟନ୍ତ କହିଆସୁଛୁ ଯେ ବସୁଧା ହେଲା ଆମର ମାତା—କାରଣ ମଣିଷ ଯାହା ଲୋଡ଼େ ବସୁଧାରୁ ସବୁ ପାଇ ଯାଏ। ଭୂଇଁ ତଳେ ସୁନା ରହିଛି ବୋଲି କୁହା ହୋଇ ଆସିଛି ଓ ଆମେ ସେ କଥାରେ ପିଲାବେଳୁ ବିଶ୍ୱାସ କରି ଠିକ୍ କରିଛୁ ପାଣି ଭିତରୁ ଯେ ଭୂଇଁ ତଳୁ ବାହାରିଲାଭଳି ସୁନା ବାହାରି ପାରେ ଏ କଥା ଆମ ଭାରତର ଲୋକେ ସହଜରେ ବିଶ୍ୱାସ କରି ପାରନ୍ତି ନାହିଁ। ଜାପାନୀମାନେ ସମୁଦ୍ର ତଳୁ—ସମୁଦ୍ର ଭିତରୁ କୋଟି କୋଟି ଟଙ୍କା ରୋଜଗାର କରୁଛନ୍ତି ବୋଲି ଭୂଇଁକୁ ଯେମିତି ମା ଭଳି ବିଚାରନ୍ତି ସମୁଦ୍ରକୁ ମଧ ଠିକ୍ ସେହିଭଳି ମା' ଭଳି ବିଚାରନ୍ତି।

ଉତ୍ତରରେ ଉତ୍ତର ମେରୁସାଗର—ଦକ୍ଷିଣରେ ଭାରତମହା-ସାଗର—ପୂର୍ବରେ ପ୍ରଶାନ୍ତ ମହାସାଗର—ପଶ୍ଚିମରେ ବଙ୍ଗୋପସାଗର—ସମଗ୍ର ଅଞ୍ଚଳଟା ହେଲା ଜାପାନୀଙ୍କ ଚରାଭୂଇଁ। ପୃଥିବୀର ସବୁଠାରୁ ଦକ୍ଷ ମାଛଧରାଳୀ ହେଲେ ଜାପାନୀ। ଯୁଦ୍ଧ ପୂର୍ବରୁ ଜାପାନର ରପ୍ତାନୀ ବାଣିଜ୍ୟରେ ମାଛ ତିନି ନମ୍ବର ସ୍ଥାନଟି ଦଖଲ କରି ବସିଥିଲା।

ଚମନଲାଲଜୀ ଠିକ୍ ଲେଖିଛନ୍ତି—"ମୋର ପୃଥିବୀ ଗସ୍ତ ଭିତରେ ବର୍ମାର ରେଙ୍ଗୁନରୁ ଆମେରିକାର ମେକ୍ସିକୋ, ରୁଷର ଭ୍ଲାଡ଼ିଭଷ୍ଟକ ବନ୍ଦରରୁ ଫିଜି ଓ ଅଷ୍ଟ୍ରେଲିଆ ସବୁଠି ମୁଁ ଜାପାନୀ ମାଛଧରା ବୋଟକୁ ଦେଖିଛି"। ଜଳଜାତ ଦ୍ରବ୍ୟ ରପ୍ତାନୀରେ ଯୁଦ୍ଧ-ପୂର୍ବ ସମୟରେ ଜାପାନ ପ୍ରଥମ ସ୍ଥାନ ଅଧିକାର କରିଥିଲା ଓ ସମଗ୍ର

ପୃଥିବୀରେ ଯେତେ ମାଛ ଧରା ହୁଅନ୍ତ, ତା'ର ଶତକଡ଼ା ପ୍ରାଳଶ୍ଶଗା ଜାପାନୀଙ୍କ ଜାଲରେ ପଡ଼ୁଥିଲା । ଜାପାନୀମାନେ ଖାଇବା ପାଇଁ ମାଂସ ବେଶି ପାଆନ୍ତ ନାହିଁ—କାରଣ ସେ ଦେଶରେ ବେଶି ଗୋରୁ, ଛେଳି ନାହାନ୍ତ କ ବାହାରୁ ଏତେ ଦାମ୍ ଦେଇ କଣି ପାରିବେ ନାହିଁ । ଇଂରେଜମାନେ ଯେତେ ମାଂସ ଖାଆନ୍ତ ଜାପାନୀମାନେ ତାହାର ସପ୍ତମ ଭାଗରୁ ଭାଗେ ମଧ ଖାଇବା ଦେଖା ଯାଏ ନାହିଁ । ମାଂସ ସ୍ଥାନ ପୂରଣ କରୁଛି ମାଛ । ଜାପାନୀର ଖାଦ୍ୟ ହେଲା ଭାତ ଓ ମାଛ । ମାଛ ଟା ସେମାନଙ୍କର ଗୋଟାଏ ପ୍ରଧାନ ଖାଦ୍ୟ ହେଲେ ମଧ ବାହାରକୁ ରପ୍ତାନୀ ଉପରେ ସେମାନେ ଖୁବ୍ ଜୋର ଦିଅନ୍ତ । ମାଛ ବଦଳରେ ବିଦେଶରୁ ଅନ୍ୟ ଆବଶ୍ୟକୀୟ ପଦାର୍ଥ ଆଣିବା ହେଲା ସେମାନଙ୍କର ଉଦ୍ଦେଶ୍ୟ ।

ଯୁଦ୍ଧ ପୂର୍ବରୁ ଜାପାନ ବର୍ଷକୁ ୩୦ କୋଟି ଜାପାନୀ ମୁଦ୍ରା ( ଟ................ ) ର ମାଛ ଶୁଖୁଆ ରପ୍ତାନ କରୁଥିଲା—ଶୁଖୁଆ ପରିମାଣ ବେଶି—ମାଛ ପରିମାଣ କମ୍ । ଆମେରିକା ଓ ଇଂଲଣ୍ଡ ବଜାରରେ ଜାପାନୀ ଶୁଖୁଆ—ଜାପାନୀ ମାଛ ଯଥେଷ୍ଟ ମିଳୁଥିଲା । ଯୁଦ୍ଧ ପରେ ଅବସ୍ଥାର ଟିକଏ ପରିବର୍ତ୍ତନ ହୋଇଯାଇଛି । ଏଣିକି ବରଫ ଦିଆ ମାଛର ରପ୍ତାନୀ ଅଧିକ ପରିମାଣରେ ହେଉଛି । ପୂର୍ବରୁ ଯାହା ରପ୍ତାନୀ ହେଉଥିଲା ସେଥିର ଶତକଡ଼ା ୪୦ ଭାଗ ଚୀନ୍ ନେଇ ଯାଉଥିଲା । ଏବେ ଆଉ ସେ ଅବସ୍ଥା ନାହିଁ । ଏବେ ଜାପାନର ବଡ଼ ଗରାଖ ହେଉଛି ଆମେରିକା । ମାଛକୁ ଛାଡ଼ିଦେଲେ ମଧ ଅନ୍ୟ ଅନେକ ପ୍ରକାରର ସମୁଦ୍ରଜାତ ଦ୍ରବ୍ୟର ବଡ଼ ଗରାଖ ଆମେରିକା ।

ମାଛ ତଳକୁ ଜାପାନୀଙ୍କୁ ପଇସା ଯୋଗାଇବାରେ କଙ୍କଡ଼ାର ସ୍ଥାନ । ହଜାର ହଜାର ପେଟି କଙ୍କଡ଼ାମାଂସ ରପ୍ତାନୀ କରି ଜାପାନୀ କେଉଟ ପଇସା ପାଉଛନ୍ତ । ବର୍ଷକୁ ପ୍ରାୟ ୨ ଲକ୍ଷ ପେଟି ସାଡ଼ିନ୍ ମାଛ ( ଚିଲିକାର ପାଟୁଆ ମାଛ ) ( ଟମାଟୋ ରସରେ ପାଗ ହୋଇ ) ଆମେରିକା ନେଇ ଯାଉଛି । ଅଧାସିଝା, ବରଫ ଦିଆ, ତେଲ ଦିଆ,

ରନ୍ଧା, କଙ୍କଡ଼ା ମାଛ, ଶାମୁକା ପଠାଇ ବିଦେଶରୁ ପଇସା ଆଣିବାରେ ଜାପାନୀମାନେ ଧୁରନ୍ଧର । ।

ଜାପାନ ଉପକୂଳ ସମୁଦ୍ରରେ ସମୁଦ୍ର ଦଳ ବା ସମୁଦ୍ର ଶିଉଳୀର ଅସରନ୍ତି ଭଣ୍ଡାର ରହିଛି । ଅଗର—ଅଗର ଉତ୍ପାଦନ କରିବା ସହଜ ହୋଇ ପଡ଼ିଛି ।

ମାଛ ସାଙ୍ଗକୁ ମାଛ ଲିଭର ତେଲରୁ ସେମାନେ କଛି କମ୍ ପଇସା ପାଆନ୍ତି ନାହିଁ । ବର୍ଷକୁ ପ୍ରାୟ ଶହେ ଟନ୍ "ଭିଟାମିନ୍—ତେଲ" ଆମେରିକାକୁ ରପ୍ତାନୀ କରା ଯାଉଥିଲେ ମଧ୍ୟ କେବଳ ଆମେରିକା ଚାହୁଁଛି ତା'ର ପ୍ରାୟ ପଚିଶ ତିରିଶ ଗୁଣ । ଏ ଶିଳ୍ପର ଭବିଷ୍ୟତ ଜାପାନୀମାନଙ୍କ ପାଇଁ ଭାରି ଉଜ୍ଜ୍ୱଳ ।

ମଗର, ତିମି, ଶଙ୍ଖ ପ୍ରଭୃତିରୁ କେତେ ପ୍ରକାର ପଦାର୍ଥ ଯେ ରପ୍ତାନୀ କରାଯାଏ ତା'ର ହିସାବ କିଏ ରଖୁଛି ?

ସମୁଦ୍ର—ଶିଉଳୀ ଓ ସମୁଦ୍ର ଦଳରୁ ସୋଡ଼ିୟମ ଆଗିନେଟ ତିଆରି କରି ରପ୍ତାନୀ କରା ଯାଉଛି ।

ଅଗର—ଅଗର ଆଜିକାଲି ଏତେ ପ୍ରକାରର ପଦାର୍ଥର ଉତ୍ପାଦନ ଲାଗୁଛି ଯେ ଜାପାନ ଆହୁରି ଅଧିକରୁ ଅଧିକ ଏହି କିନିଷଟି ଉତ୍ପାଦନରେ ଲାଗି ପଡ଼ିଛି ।

## ଭାରତ ଜାଲ୍ ଯୋଗାଇ ପାରେ

ଯୁଦ୍ଧପରେ ଜାପାନର ମାଛ ଶିଳ୍ପ ଯଦି କୌଣସି କାରଣରୁ ଟିକିଏ ବାଧା ପାଇଛି ତାହା ହେଉଛି ଜାଲ୍ ଓ ଜାଲଟଣା ଦଉଡ଼ିର ଅଭାବ । ଯେତେ ରସି ବା ଦଉଡ଼ି ଦରକାର ତା'ର ଦଶ ଭାଗରୁ କେବଳ ଭାଗେ ଓ ଜାଲର ପାଞ୍ଚ ଭାଗରୁ ଭାଗେ ମାତ୍ର ଜାପାନୀମାନେ ଆମଦାନୀ ସୂତ୍ରରେ ପାଉଛନ୍ତି । ଫିଲିପାଇନ୍‌ର ଛଣପଟରେ ଭଲ ମାଛ

ଏହା ଜାଲ ଦଉଡ଼ି ହୁଏ ଓ ଯୁଦ୍ଧ ପୂର୍ବରୁ ବର୍ଷକୁ ପ୍ରାୟ ୧୫ କୋଟି ପାଉଣ୍ଡ ଜାପାନ କଣୁଥିଲା । ଏବେ ସେମାନେ ୭୦ କୋଟ ପାଉଣ୍ଡ କଣିବାକୁ ଚାହୁଁ ଛନ୍ତି ।

ଭାରତରେ ଯଦି ଜାଲ ଓ ଦଉଡ଼ି ତିଆରି ଶିଳ୍ପକୁ ସଙ୍ଗଠିତ କରାଯା'ନ୍ତା ତେବେ କୋଟି କୋଟି ଟଙ୍କାର ମାଲ ଆମେ ରପ୍ତାନୀ କରି ପାରନ୍ତେ ବୋଲି ଚମନ୍‌ଲାଲ୍‌ଜୀ ମତ ପ୍ରକାଶ କରିଛନ୍ତି ।

## ସରକାର ଦାୟିତ୍ୱ ନ ନେଲେ ହେବନାହିଁ

ଚମନ୍‌ଲାଲ୍‌ଜୀ ଠିକ୍ କହିଛନ୍ତି ଯେ ସରକାର ନକେ ବାଟ ଦେଖାଇ ନ ଦେଲେ ଓ ପ୍ରତ୍ୟକ୍ଷ ସାହାଯ୍ୟ ନ ଦେଲେ କୌଣସ ଶ ଳ୍ପ ବ୍ୟାପକ ରୂପ ନେଇ ପାରିବ ନାହିଁ । ଅର୍ଥାତ ବହୁଲୋକ ସେ ଶିଳ୍ପକୁ ଆଦରିବେ ନାହିଁ । ସରକାରୀ ସାହାଯ୍ୟ ସମର୍ଥନ ଓ ପରୋକ୍ଷ ପରିଚାଳନା ରହିଲେ ଲୋକ ସେଥିରେ ଗୋଡ଼ ପୂରାଇବାକୁ ସାହସ କରିବ, ପୁଞ୍ଜି ଖଟାଇବ ଓ ଶିଳ୍ପଟାର ଭବିଷ୍ୟତ ଅଛି ବୋଲି ବିଶ୍ୱାସ କରିବ ।

ଜାପାନରେ ମାଛଶିଳ୍ପ ବରଂ ସମୁଦ୍ର ଶିଳ୍ପ ବୋଲି କହିଲେ ଠିକ୍ ହେବ—ଏତେ ଉନ୍ନତ କରିବାର କାରଣ ହେଉଛି ସରକାର ସେ ଶିଳ୍ପକୁ ଉତ୍ସାହ ଦେଉଛି, ତା'ର ଉନ୍ନତ ପାଇଁ ଗବେଷଣା ଚଳାଇଛି, ତାକୁ ଯୋଗ୍ୟ ଲୋକଙ୍କ ହାତରେ ରଖିବା ପାଇଁ ବିଶେଷଜ୍ଞ ତାଲିମ କରୁଛି । ମାଛଶିଳ୍ପ ବିଦ୍ୟା ଶିକ୍ଷା ଦେବା ପାଇଁ ବହୁ ସଂଖ୍ୟକ କଲେଜ ରହିଛି ଓ ଅନେକ ବିଶ୍ୱବିଦ୍ୟାଳୟରେ ଏଥିପାଇଁ ସ୍ୱତନ୍ତ୍ର ବିଭାଗ ରହିଛି । ସେ କଲେଜମାନଙ୍କର ମାଛଧରା ବୋଟ ଓ ଜାହାଜ ମାନ ରହିଛି । ପୋଥିବିଦ୍ୟା ସଙ୍ଗକୁ କ୍ଷେତ୍ରବିଦ୍ୟା ମଧ୍ୟ ଛାତ୍ରମାନଙ୍କୁ ଦିଆଯାଏ । ଫଳରେ ଜାପାନରେ ମାଛଶିଳ୍ପର, ସମୁଦ୍ରଜାତ ଦ୍ରବ୍ୟ ଶିଳ୍ପର ଢେର ଅତି ଗଭୀରକୁ ଯାଇଛି—ବହୁଦୂରକୁ ଯାଇଛି ।

ଭାରତର ଉପକୂଳ କେତେ ଦୀର୍ଘ ! ଭାରତର . ନୋଳିଆ ପ୍ରଭୃତି ଜାତି ସମୁଦ୍ରକୁ କି ଭଳି ଆଦରି ନେଇଛନ୍ତି ଆମେ ଜାଣୁ । ସମୁଦ୍ରରୁ ପଇସା ଗଣିବା ବିଦ୍ୟାରେ ଜାପାନୀମାନେ ଆମକୁ ବାଟ ଦେଖାଉଛନ୍ତି —ସେ ବାଟରେ ଗଲି ଶିଖିଲେ ଆମରହିଁ ଉନ୍ନତି ହେବ ।

ବସୁଧା ମାତା କୋଳରେ ସବୁଦିନ ପୁଅ ଝିଅ ନ' ବସି ସମୁଦ୍ରମାତା କୋଳକୁ କେତେଜଣ ଗଲିଗଲେ କେତେ ଭଲ ହୁଅନ୍ତା ବେଶ୍ ଅନୁମାନ କରାଯାଇ ପାରେ ।

ଗତ ମହାଯୁଦ୍ଧ ପରେ ଜାପାନର ଯେଉଁ ଅସୁବିଧା ହୋଇଛି ସେ ଅସୁବିଧା କ୍ରମେ କ୍ରମେ ଦୂର ହୋଇ ଯାଉଛି ଓ ସେ ଦେଶରୁ ଆମେରିକା ସୈନ୍ୟ ଅପସରି ଗଲା ପରେ ସେମାନେ ଅତିଶୀଘ୍ର ନିଜ ଦେଶର ଭାଗ୍ୟକୁ ପୁଣି ଥରେ ସଜାଡ଼ି ନେବେ ।



# ପ୍ରକୃତ ଚାଷୀନେତା

## ତାଲିମ କର

ଗ୍ରାମକୁ ଶିଳ୍ପ ଭାବରେ ବ୍ୟବହାର କରି କାମ କରିବାକୁ ହେଲେ ଓ ପ୍ରତି ଗାଁରେ ଗୋଟାଏ ନାଁ ଗୋଟାଏ ଛୋଟ ବଡ଼ ଶିଳ୍ପ ପ୍ରତିଷ୍ଠା କରିବାକୁ ଇଚ୍ଛା ଥିଲେ ଆମକୁ ଗାଁ ଭିତରୁ ହଜାର ହଜାର ଲୋକ ବାଛି ତାଲିମ କରିବାକୁ ପଡ଼ିବ ବୋଲି ଚମନ୍‌ଲାଲ୍‌ଜୀ ତାଙ୍କ ରିପୋର୍ଟ ଶେଷରେ ପରାମର୍ଶ ଦେଇଛନ୍ତି । ତାଙ୍କ ପରାମର୍ଶ ହେଉଛି ଭାରତର ପାଞ୍ଚଲକ୍ଷ ଗାଁ ପାଇଁ ଏକଲକ୍ଷ ଚାଷୀନେତା ଉତାରିବାକୁ ପଡ଼ିବ । ସେମାନଙ୍କୁ ୬ ମାସ ଲେଖାଏଁ ଶିକ୍ଷାଦେଇ ପାଞ୍ଚଟି ଲେଖାଁ ଗାଁର ଦାୟିତ୍ୱ ଦେବାକୁ ହେବ ।

ଏଭଳି ଯେଉଁ ଚାଷୀନେତା ତାଲିମ ହେବେ ସେମାନଙ୍କୁ ବାଛିଲା ବେଳେ ସେମାନଙ୍କୁ ଦିଆ ଯାଉଥିବା ଦାୟିତ୍ୱ ତୁଲାଇବା ପାଇଁ ଯୋଗ୍ୟତା ସେମାନଙ୍କର ଅଛି କି ନାହିଁ ଦେଖିବାକୁ ପଡ଼ିବ । ଗାଁ ଗହଳି ବିଷୟରେ ଅଭିଜ୍ଞତା ହେଲା ବଡ଼ ଯୋଗ୍ୟତା । ସ୍ୱଭାବ ଚରିତ୍ର ଗ୍ରାମ ଲୋକଙ୍କ ପସନ୍ଦ ହେଲାଭଳି ନ ହୋଇଥିଲେ ଚଳିବ ନାହିଁ । ସ୍ୱାସ୍ଥ୍ୟ ଭଲଥିବ ଓ ଗାଁର ସେବା କରିବାଭଳି ମନୋବୃତ୍ତି ଥିବ । ସେ ବାହାରୁଥିବ ସେ ଗାଁଟିକୁ ଯେତେଦୂର ସମ୍ଭବ ସ୍ୱାବଲମ୍ବୀ କରି ପାରିବା ।

## ଖତହିଁ ଆଶାଭରସା

ଗ୍ରାମର ଉନ୍ନତ କରିବାକୁ ହେଲେ ଆମ କୃଷିବିଶାରଦମାନଙ୍କୁ ପ୍ରଥମେ ଦେଖିବାକୁ ହେବ ଗ୍ରାମପାଇଁ ଯଥେଷ୍ଟ ଖତ କିପରି ମିଳିବ ।

ଖତର ପ୍ରାଚୁର୍ଯ୍ୟହିଁ  କୃଷୀର ପ୍ରଧାନ ସମ୍ବଳ । ଜୈବିକ ତଥା ରସାୟନିକ —ଉଭୟ ଖତର ପ୍ରାଚର୍ଯ୍ୟ ନ ହେଲେ କୃଷିର ଉନ୍ନତି ହେବ ନାହିଁ ।

## ମଇଳାକୁ ଖତ କର

ଆମ ଦେଶରେ ଖତକୁ ଖରା ବାଇର ବର୍ଷାରେ ଯେମିତି ପଦାରେ ପକାଇ ଦିଆ ଯାଇଥାଏ ସେଥିରେ ଖତର ଗୁଣ ଅନେକ ପରିମାଣରେ ନଷ୍ଟ ହୋଇଯାଏ । ଖତକୁ ବିଜ୍ଞାନ ସମ୍ମତ ପ୍ରଣାଳୀରେ ସାଇତି ରଖିବା ପାଇଁ କୃଷୀକୁ ଶିକ୍ଷା ଦେବାକୁ ପଡ଼ିବ । ଗୋବର ଜାଳିବା ସମ୍ପୂର୍ଣ୍ଣ ବନ୍ଦ ନ ହେଲେ କୃଷୀର ମଙ୍ଗଳ ନାହିଁ କି କୃଷିର ଉନ୍ନତି ନାହିଁ ।

କିନ୍ତୁ ପ୍ରଧାନ ସମସ୍ୟା ହେଲାଣି ମନୁଷ୍ୟର ମଳକୁ ସାଇତିବା ଓ ତାକୁ ଖତରେ ପରିଣତ କରିବା । ଆମ ଦେଶରେ ମନୁଷ୍ୟର ମଳ ପ୍ରତି ଘୃଣା ଅତି ମାତ୍ରାରେ ବେଶି । ସବୁ ହରିଜନଙ୍କ ଭିତରେ ଆମ ଦୃଷ୍ଟିରୁ ମେହେନ୍ତରର ସ୍ଥାନ ସବୁଠାରୁ ତଳେ ହେବାର ଏକମାତ୍ର କାରଣ ବୋଧହୁଏ ସେ ଆମ ମଇଳା ସଫା କରେ । ସେହି ମଇଳାକୁ ଗାନ୍ଧିଜୀଙ୍କ ଭାଷାରେ କହିବାକୁ ଗଲେ ସୁନାରେ ପରିଣତ କରି ହେବ ।

ଜାପାନ ଆଧୁନିକ ସଭ୍ୟତାର ସବୁଠାରୁ ଉଚ୍ଚ ପାହାଚକୁ ଯାଇଛି ସତ—କିନ୍ତୁ ମଇଳାକୁ ସାଇତି ରଖିବାର ସେହି ପୁରୁଣା ପ୍ରଥାକୁ ଛାଡ଼ି ନାହିଁ ।

ଜାପାନରେ ମଇଳା ସାଇତିବା ବିଷୟରେ ଗୋଟିଏ ବଡ଼ ମଜାର କଥା ଚମନ୍‌ଲାଲ୍‌ଜୀ ତାଙ୍କ ରିପୋର୍ଟରେ ଲେଖିଛନ୍ତି । ସେ ବର୍ଣ୍ଣନା କରିଛନ୍ତି—

"ମୁଁ ଯେତେବେଳେ ଟୋକିଓରେ ଗୋଟିଏ ଘରଭଡ଼ା ନେଇ ରହିଲି ମ୍ୟୁନିସିପାଲିଟିକୁ ଲେଖିଲି ଯେ ଦିନକୁ ଦୁଇଥର ଲେଖାଁ ମୋ

ପାଇଖାନା ସଫା କରିବା ପାଇଁ ଅନୁଗ୍ରହ କରି ମେହେନ୍ତର ପଠାଇବାର ବ୍ୟବସ୍ଥା କରନ୍ତୁ । ମୋର ଏ ଚିଠି ପାଇଁ ମ୍ୟୁନିସିପାଲିଟି ଅଫିସର ଏକାବେଳକେ କାବା ହୋଇ ଗଲେ । ମୋତେ ଉତ୍ତର ଦେଇ ସେ ଲେଖିଲେ ଯେ ମୋତେ ବିଶେଷ ସୁବିଧା ଦେବା ପାଇଁ ଓ ସ୍ୱତନ୍ତ୍ର ଅନୁଗ୍ରହ ଦେଖାଇ ସେ ଦଶଦିନେ ଥରେ ଲେଖାଁ ପାଇଖାନା ସଫା କରିବା ପାଇଁ ମେହେନ୍ତର ପଠାଇବେ—ଯଦିଓ ଟୋକିଓ ମ୍ୟୁନିସିପାଲିଟି ମାସକରେ ଥରେ ଲେଖାଁ ପାଇଖାନା ସଫା କରନ୍ତି ।

ପ୍ରତି ଘରକୁ କିଛି କିଛି ଡିସ୍ଇନ୍‌ଫେକ୍‌ଟାଣ୍ଟ ବା ଶୋଧକ ଦ୍ରବ୍ୟ ଦିଆ ଯାଇଛି । ପାଇଖାନାରେ ଦିନକୁ ଦୁଇଥର ଲେଖାଁ ସେଥିରୁ ପକାଇ ଦେଲେ ମଇଳାର ଦୁର୍ଗନ୍ଧ ରହେ ନାହିଁ । ଗୋଟାଏ ଲେଖାଁ ଗହୀରା ଗାତରେ ଝାଡ଼ା ଫେରନ୍ତି ଓ ମାସକେ ଥରେ ମେହେନ୍ତର ଆସି ସଫା କରିନିଏ । ମଇଳା ବୁହାହୁଏ ବନ୍ଦ ଡବାରେ—ଖୋଲା ଟୋକେଇ ବା ବାଲ୍‌ଟିରେ ନୁହେଁ । ବନ୍ଦ ମଇଳା ଡବାକୁ ଗାଡ଼ିରେ ନେଇଯିବା ବାଙ୍କଥାଏ ।

ଟୋକିଓରେ ଜଣେ ଅଫିସରଙ୍କୁ ମୁଁ ପଚାରିଲି—ଆପଣ ଫ୍ଲସ୍ ପାଇଖାନା କରି ମଇଳାତକ ସମୁଦ୍ରକୁ ଠେଲି ଦେଉ ନାହାନ୍ତି କାହିଁକି ? ସେ ସଙ୍ଗେ ସଙ୍ଗେ ଉତ୍ତର ଦେଲେ—ତାହା ହେଲେ ତ ଆମେ ମଇଳାକୁ ନଷ୍ଟ କରି ଦେଲୁ । ଆମେ କିଛି ଫୋପାଡ଼ି ଦେଉ ନାହିଁ । ଏ ମଇଳାଗୁଡ଼ାକ ଦାମିକା—ଏଥିରୁ ଆମେ ଟଙ୍କା ପାଉଛୁ । ଜାପାନୀ କୃଷୀ ଜାଣିଛି ମଇଳାର ମୂଲ୍ୟ କେତେ । ସେ ଏଭଳି ଭାବରେ ବୁଝିଛି ଯେ ତା’ କିଆରୀ—ପାଇଖାନାରେ ଝାଡ଼ା ଫେରିବା ପାଇଁ ସେ ବାଟର ପାସେଞ୍ଜରମାନଙ୍କୁ ଡାକେ । ଏହି ପାଇଖାନାରେ ଆସି ଝାଡ଼ା ଫେରନ୍ତୁ” ବୋଲି ସାଇନ୍‌ବୋର୍ଡ଼ ଦିଆ ଯାଇଥାଏ । କୃଷୀ ଜାଣେ ଯେ ଖତହିଁ ତା’ ପକ୍ଷରେ ସୁବର୍ଣ୍ଣ ।”

ଆମ ଦେଶରେ ପଚିଶ ବର୍ଷତଳେ ଗାନ୍ଧିଜୀ ଏହି ମଇଳା ଖତ ଉପରେ ଏ ଜୋର୍ ଦେଇଥିଲେ ଓ ବାହାରେ ଝାଡ଼ା ନ ଫେରି

ଟ୍ରେଞ୍ଚଲେଟ୍ରିନ ବା ଖାତ ପାଇଖାନାରେ ଝାଡ଼ା ଫେରିବା ପାଇଁ ଦେଶର ସମସ୍ତଙ୍କୁ ନିବେଦନ କରିଥିଲେ । ତାଙ୍କ ଉପଦେଶ ଫଳରେ ସମଗ୍ର ଦେଶର ବୁଲିଆସିଲେ ଆଜି ହଜାର ହଜାର ଲୋକ ଟ୍ରେଞ୍ଚ ପାଇଖାନାରେ ଝାଡ଼ା ଫେରୁଛନ୍ତି ଓ ମଇଳା ଖତ ତିଆରି କରି ଜମିରେ ବ୍ୟବହାର କରୁଛନ୍ତି ।

ଚମନ୍‌ଲାଲ୍‌ଙ୍କର ପରାମର୍ଶ ଯେ ଗାଁ ଲୋକଙ୍କୁ ତାଲିମ୍ କରିବା ପାଇଁ —ସେମାନଙ୍କର ଜ୍ଞାନ ବୃଦ୍ଧି ପାଇଁ ପ୍ରତି ଗାଁରେ ଗୋଟିଏ ଗୋଟିଏ ଲାଇବ୍ରେରୀ ରହିବା ଉଚିତ ଓ ସେ ଲାଇବ୍ରେରୀରେ ମାତୃ-ଭାଷାରେ ଉପାଦେୟ ବହି ରଖାଯାଉ । ସେ ବହି ପଢ଼ି ଗାଁର ଲୋକେ ନିଜର ଉପକାରର ଉପାୟ ପାଇପାରିବେ । ଏହା ସଙ୍ଗେ ସଙ୍ଗେ ଆଉରି ଗୋଟିଏ କଥା ଅଳ୍ପ ଖର୍ଚ୍ଚରେ କରାଯାଇ ପାରେ । ଆଜିକାଲି ପ୍ରାୟ ପ୍ରତି ଗାଁରେ ପ୍ରାଇମେରୀ ସ୍କୁଲ୍ ହୋଇ ଗଲଣି । ପ୍ରତି ସ୍କୁଲରେ ଅନ୍ତତଃ ଜଣେ ଶିକ୍ଷକଙ୍କୁ କୃଷି ଓ ଗ୍ରାମ୍ୟ ଶିଳ୍ପରେ ତାଲିମ କରାଯାଇ ପାରେ ।

ଏହିଭଳି ଭାବରେ ଯୋଜନା କରି ଗଢ଼ାଗଲେ ଆମର ଉନ୍ନତି ପଥରେ ଆଉ କୌଣସି ବାଧା ରହିବ ନାହିଁ ।

